

# ଜନନାୟକ ଓ ଓଡ଼ିଆପ୍ରାଣ

# ରାୟବାହାଦୁର ନନ୍ଦକିଶୋର ଦାସ

# ଜନନାୟକ ଓ ଓଡ଼ିଆପ୍ରାଣ
# ରାୟବାହାଦୁର ନନ୍ଦକିଶୋର ଦାସ

ସଂପାଦନା :
ବାଉରୀବନ୍ଧୁ କର
ଅସିତ ମହାନ୍ତି

ପ୍ରକାଶକ :
ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ଗବେଷଣା ପ୍ରତିଷ୍ଠାନ
୩୪୮/୨୯୪୭, କପିଳପ୍ରସାଦ, ଭୁବନେଶ୍ୱର-୨, ଓଡ଼ିଶା

# ଜନନାୟକ ଓ ଓଡ଼ିଆପ୍ରାଣ
# ରାୟବାହାଦୁର ନନ୍ଦକିଶୋର ଦାସ

ସଂପାଦନା :
**ବାଉରୀବନ୍ଧୁ କର**
**ଅସିତ ମହାନ୍ତି**

ପ୍ରକାଶକ :
ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି
ଗବେଷଣା ପ୍ରତିଷ୍ଠାନ
୩୪୮/୨୯୪୭, କପିଳପ୍ରସାଦ
ଭୁବନେଶ୍ୱର-୨, ଓଡ଼ିଶା

ପ୍ରଥମ ପ୍ରକାଶ:
ଜୁନ୍ ୫, ୨୦୧୩

ମୁଦ୍ରଣ:
ଶ୍ରୀରାମ ସ୍କ୍ରିନ୍ ପ୍ରିଣ୍ଟିଂ, ଭୁବନେଶ୍ୱର-୭

ପ୍ରଚ୍ଛଦ:
ମହେଶ୍ୱର ମହାରଣା

**ମୂଲ୍ୟ : ଟ. ୩୦/-**

# ଦୁଇପଦ

ଆଜିର ବ୍ୟସ୍ତ ଜୀବନଯାତ୍ରା ମଧ୍ୟରେ ଆମର ପୂର୍ବସୂରୀମାନଙ୍କୁ ମନେ ପକାଇବାକୁ ଆମକୁ କ୍ୱଚିତ୍ ଅବସର ମିଳେ । ପୁଣି ଯାହାଙ୍କ ପାଖରୁ ଆମର ଆଉ କିଛି ପାଇବାର ନଥାଏ, ତାଙ୍କୁ ଆମେ ପ୍ରାୟ ମନେପକାଉ ନାହିଁ । ଆଜିର ଦେବା-ପାଇବାର ଯୁଗରେ ତେଣୁ ରାୟବାହାଦୁର ନନ୍ଦକିଶୋର ଦାସ ବିସ୍ମୃତ ହୋଇଯିବା ସ୍ୱାଭାବିକ ।

ନନ୍ଦକିଶୋର ଜନ୍ମଗ୍ରହଣ କରିଥିଲେ ୧୮୪୫ ମସିହାରେ ଏବଂ ମାତ୍ର ୪୯ ବର୍ଷ ବୟସରେ, ୧୮୯୪ରେ ତାଙ୍କର ବିୟୋଗ ଘଟିଥିଲା । ଏହି ପ୍ରାୟ ୪୯ ବର୍ଷ ମଧ୍ୟରୁ ପ୍ରାୟ ତିରିଶବର୍ଷ ଥିଲା ତାଙ୍କର ସକ୍ରିୟ କାର୍ଯ୍ୟକାଳ । ଏହି କାର୍ଯ୍ୟକାଳ ମଧ୍ୟରେ ସେ ୨୦ଟଙ୍କା ଦରମାର ଜଣେ ମାମୁଲି କିଲଟରୀ କଚେରୀର କିରାଣୀରୁ ଉଚ୍ଚ ବେତନଭୋଗୀ ଜଣେ ଡେପୁଟୀ କମିଶନର ହୋଇପାରିଥିଲେ । ପୁଣି ସେହି କାର୍ଯ୍ୟକାଳର ସବୁଠୁ ଗୁରୁତ୍ୱପୂର୍ଣ୍ଣ ପଦବୀ ଥିଲା ଓଡ଼ିଶାର ସ୍କୁଲ ସମୂହର ଜଏଣ୍ଟ ଇନସ୍ପେକ୍ଟର । ଓଡ଼ିଶାର ଶିକ୍ଷା ବିଭାଗର ଏହି ସର୍ବୋଚ୍ଚ ପ୍ରାଶାସନିକ ପଦବୀରେ ସେ ଥିଲେ ପ୍ରଥମ ଓଡ଼ିଆ ଏବଂ ତାଙ୍କ ପରେ ରାଧାନାଥ ରାୟ ସେହି ପଦ ଅଳଂକୃତ କରିଥିଲେ ।

ନନ୍ଦକିଶୋର ଥିଲେ ଉତ୍କଳଗୌରବ ମଧୁସୂଦନ ଦାସଙ୍କର ଘନିଷ୍ଠ ପାରିବାରିକ ସମ୍ପର୍କୀୟ । ତାଙ୍କର ବଡ଼ଝିଅ ନିଶାମଣିଙ୍କୁ 'ଭୀମାଭୂୟାଁ' ଉପନ୍ୟାସର ଲେଖକ ତଥା ମଧୁସୂଦନଙ୍କ ଅନୁଜ ଗୋପାଳ ବଲ୍ଲଭ ବିବାହ କରିଥିଲେ । ନିଶାମଣି ଥିଲେ ସେତେବେଳର ହିସାବରେ ଉଚ୍ଚଶିକ୍ଷିତା । କାରଣ ସେ ଓ ଭକ୍ତକବି ମଧୁସୂଦନ ରାଓଙ୍କର ଝିଅ ବାସନ୍ତୀ ୧୮୮୧ରେ ଭର୍ଣ୍ଣାକ୍ୟୁଲାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାରେ ଥିଲେ ପ୍ରଥମ ଦୁଇ ଓଡ଼ିଆ ଝିଅ ।

ନନ୍ଦକିଶୋର ମଧ୍ୟ ଥିଲେ ନାରୀଶିକ୍ଷାର ସମର୍ଥକ ଓ ସଂସ୍କାରବାଦୀ । ସେ କେବଳ ତାଙ୍କର ଝିଅମାନଙ୍କୁ ପାଠପଢ଼ିବାକୁ ସ୍କୁଲକୁ ପଠାଇ ନଥିଲେ; ଯେଉଁ ସମୟରେ ଖ୍ରୀଷ୍ଟିଆନ୍‌ମାନଙ୍କୁ ଅସ୍ପୃଶ୍ୟ ମନେକରାଯାଉଥିଲା, ସେହି ସମୟରେ ଖ୍ରୀଷ୍ଟିଆନ୍ ଶିକ୍ଷୟିତ୍ରୀ ନିଯୁକ୍ତ କରି ନିଜର ଝିଅମାନଙ୍କୁ ସିଲେଇ ବି ଶିଖାଇ ଥିଲେ । ପୁଣି ଆଉ ପାଦେ ଆଗେଇ ଯାଇ ମୁସଲମାନ ଓସ୍ତାଦ୍‌ଙ୍କୁ ନିଜ ଝିଅମାନଙ୍କର ସଙ୍ଗୀତ ଶିକ୍ଷକ ରୂପେ ନିଯୁକ୍ତ କରିଥିଲେ । ତାଙ୍କର ଅଣନାତୁଣୀ ଅନ୍ନପୂର୍ଣ୍ଣା ମହାରଣା ନିଜର ଆତ୍ମକଥା 'ଅମୃତ ଅନୁଭବ'ରେ ଏସବୁର ବିଶଦ ଉଲ୍ଲେଖ କରିଛନ୍ତି ।

ଉନବିଂଶ ଶତାବ୍ଦୀର ପ୍ରଥମ ଓ ପ୍ରମୁଖ ଶିକ୍ଷାବିତ୍ ତଥା ଜଣେ ଦକ୍ଷ ଓଡ଼ିଆ ପ୍ରଶାସକ ଭାବରେ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ଅନେକ ଉଲ୍ଲେଖନୀୟ କାମ କରିଥିଲେ ନନ୍ଦକିଶୋର । କେନ୍ଦୁଝରର ପଲିଟିକାଲ୍ ଏଜେଣ୍ଟ ଏବଂ ଅନୁଗୁଳ-କନ୍ଧମାଳର କଲେକ୍ଟର ଓ ଜିଲ୍ଲା ମାଜିଷ୍ଟ୍ରେଟ୍ ଭାବରେ ମଧ ତାଙ୍କର କାର୍ଯ୍ୟ ଥିଲା ପ୍ରଶଂସନୀୟ । ଫଳ ସ୍ୱରୂପ ବ୍ରିଟିଶ ସରକାର ତାଙ୍କୁ 'ରାୟବାହାଦୁର' ଉପାଧିରେ ଭୂଷିତ କରିଥିଲେ ।

ସରକାରଙ୍କର ଉଚ୍ଚ ପ୍ରାଶାସନିକ ପଦବୀରେ ଥାଇ ବି ମୃତ୍ୟୁର ପ୍ରାୟ ପାଞ୍ଚବର୍ଷ ପୂର୍ବରୁ ନନ୍ଦକିଶୋର ପ୍ରତିଷ୍ଠା କରିଥିଲେ 'ଉତ୍କଳ ସମ୍ମିଳନୀ ସଭା' ନାମରେ ଏକ ସଂସ୍କାରକାମୀ ଅନୁଷ୍ଠାନ । ମଧୁସୂଦନଙ୍କ ଅନୁଜ ତଥା ନନ୍ଦକିଶୋରଙ୍କ ଜାମାତା ଗୋପାଳବଲ୍ଲଭ ଦାସଙ୍କର ସେହି ଅନୁଷ୍ଠାନ ସହିତ ଘନିଷ୍ଠ ସମ୍ପର୍କ ଥିଲା । ମୁଖ୍ୟତଃ ଉତ୍କଳବାସୀ କରଣମାନଙ୍କର ମଙ୍ଗଳ କଳ୍ପେ ସେହି ଅନୁଷ୍ଠାନ ଗଠିତ ହୋଇଥିଲେ ହେଁ

ସେଥିରେ ଅନ୍ୟ ଜାତିର ଉତ୍କଳୀୟମାନଙ୍କର ମଧ୍ୟ ଯୋଗଦାନ ରହିଥିଲା । ପୁଣି ନାମ ଦୃଷ୍ଟିରୁ ତାହାର ପରିସର ଥିଲା ବ୍ୟାପକ । ନନ୍ଦକିଶୋରଙ୍କର ଅକାଳ ବିୟୋଗ ସହିତ ସେହି ଅନୁଷ୍ଠାନର ବିଲୟ ଘଟିଲା । ପ୍ରାୟ ଏକଦଶନ୍ଧି ପରେ ସମଗ୍ର ଓଡ଼ିଶାର ଏକୀକରଣ ତଥା ବୃହତ୍ତର ଓଡ଼ିଶା ଗଠନ ଓ ତା'ର ବିକାଶ ପାଇଁ ମଧୁସୂଦନ ଯେଉଁ 'ଉତ୍କଳ ସମ୍ମିଳନୀ' ପ୍ରତିଷ୍ଠା କଲେ, ସେହି ନାମଟି ସେ ନନ୍ଦକିଶୋରଙ୍କର ସେହି ଅନୁଷ୍ଠାନର ନାମରୁ ହିଁ ଗ୍ରହଣ କରିଥିଲେ ।

ଏ ପ୍ରସଙ୍ଗରେ ଉଲ୍ଲେଖନୀୟ ଯେ ନନ୍ଦକିଶୋର ତାଙ୍କ ମୃତ୍ୟୁର ମାତ୍ର ତିନିଦିନ ପୂର୍ବରୁ ମଧୁସୂଦନଙ୍କୁ ଗୋଟିଏ ଚିଠି ଲେଖି, ତାଙ୍କ ଅନ୍ତେ ତାଙ୍କ ସ୍ତ୍ରୀଙ୍କର ପୁତ୍ର ଓ ତାଙ୍କ ପିଲାମାନଙ୍କର ପିତାର ଭୂମିକା ନେବାକୁ ଅନୁରୋଧ କରିଥିଲେ । ନନ୍ଦକିଶୋରଙ୍କ ମୃତ୍ୟୁ ପରେ ଓଡ଼ିଶାବାସୀଙ୍କୁ 'ଏକ ଆହ୍ୱାନ' ଦେଇ ମଧୁସୂଦନ ଯେଉଁ ଇଂରାଜୀ ଲେଖାଟି 'ଉତ୍କଳଦୀପିକା'ରେ ଲେଖିଥିଲେ, ସେଥିରେ ନନ୍ଦକିଶୋରଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ସମ୍ମାନ ପ୍ରକଟିତ ହୋଇଥିଲା । ନନ୍ଦକିଶୋରଙ୍କ ପରି ଜଣେ ଉଜ୍ଜ୍ୱଳ କୀର୍ତ୍ତିମାନ୍ ପୁରୁଷଙ୍କର ସ୍ମୃତିରକ୍ଷା ପାଇଁ ମଧ୍ୟ ସେ ଓଡ଼ିଶାବାସୀଙ୍କୁ ଆହ୍ୱାନ ଦେଇଥିଲେ ।

ଗୋଟିଏ ଜାତି ଭାବରେ ଆମର ଗୋଟିଏ ବଡ଼ ଦୋଷ ହେଉଛି, ଆମେ ଆମର ଜାତୀର ସମ୍ପତ୍ତି ଗୁଡ଼ିକୁ ସାଇତି ରଖୁନାହିଁ । ସେଇଥିପାଇଁ ସମ୍ଭବତଃ ରାୟବାହାଦୁର ନନ୍ଦକିଶୋର ଦାସ ଆଜି ଆମ ନିକଟରେ ବିସ୍ମୃତ । ଓଡ଼ିଶାରେ କିଛି କିଛି ଭଲ କାମର ନେପଥ୍ୟରେ, ପ୍ରେରଣାଦାତା ଭାବରେ ନିଜର ଭୂମିକା ନିର୍ବାହ କରି ଆସୁଥିବା ଜଣେ ପ୍ରବାସୀ ଓଡ଼ିଆ ଏହି ପୁସ୍ତକ ପ୍ରସ୍ତୁତିର ନେପଥ୍ୟରେ ଅଛନ୍ତି । ନନ୍ଦକିଶୋରଙ୍କ ଜନ୍ମର ପ୍ରାୟ ୧୭୦ବର୍ଷ ଏବଂ ମୃତ୍ୟୁର ପ୍ରାୟ ୧୨୦ବର୍ଷ ପରେ ତାଙ୍କୁ ପୁଣିଥରେ ମନେପକାଇବା ପାଇଁ ପ୍ରସ୍ତୁତ ଏହି ପୁସ୍ତକ ତାଙ୍କରି ପ୍ରେରଣାରେ ପ୍ରକାଶ ପାଉଛି । ଆମେ କିନ୍ତୁ ତାଙ୍କୁ ଆଉ ନେପଥ୍ୟରେ ରଖିବାକୁ ଚାହୁଁନାହୁଁ । ସେ ହେଉଛନ୍ତି ଜର୍ମାନୀ ନିବାସୀ ଓଡ଼ିଆ ଇଂଜିନିୟର ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ ।

ଏହି ପୁସ୍ତକ ପାଇଁ 'ସୃଜନିକା' ପକ୍ଷରୁ ଆମକୁ 'ଉତ୍କଳଦୀପିକା' ପୃଷ୍ଠାରୁ ଅନେକ ମୂଲ୍ୟବାନ ତଥ୍ୟ ଯୋଗାଇ ଦେଇଛନ୍ତି ଶ୍ରୀ ନିଖିଳ ମୋହନ ପଟ୍ଟନାୟକ । ସେଥିପାଇଁ ମୁଁ ଶ୍ରୀ ପଟ୍ଟନାୟକଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛି । ଓଡ଼ିଶା ରାଜ୍ୟ ଅଭିଲେଖାଗାର ପକ୍ଷରୁ ପ୍ରସ୍ତୁତ 'ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ (ତଥ୍ୟ ସମ୍ବଳିତ ଉପାଦାନ) ୧୮୦୩-୧୯୨୦' ପୁସ୍ତକ ଏବଂ ରାଉରକେଲାର 'ପ୍ରଗତି ଉତ୍କଳ ସଂଘ' ପକ୍ଷରୁ ପ୍ରକାଶିତ ତଥା ଦେବେନ୍ଦ୍ର କୁମାର ଦାଶଙ୍କ ସଂପାଦିତ 'ଉତ୍କଳ ସମ୍ମିଳନୀ, ୧୮୦୩-୧୯୩୬' ପୁସ୍ତକର ସହାୟତା ମଧ୍ୟ ଆମେ ଏଥିପାଇଁ ନେଇଛୁ ।

ଏହି ପୁସ୍ତକର ଅନ୍ୟତମ ସଂପାଦକ ପ୍ରଫେସର ଡକ୍ଟର ବାଉରୀବନ୍ଧୁ କରଙ୍କ ଦ୍ୱାରା ପ୍ରତିଷ୍ଠିତ 'ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ଗବେଷଣା ପ୍ରତିଷ୍ଠାନ' ଏହି ପୁସ୍ତକଟିକୁ ଆଗ୍ରହର ସହ ପ୍ରକାଶ କରୁଛି । ଉଲ୍ଲେଖନୀୟ ଯେ ଏହା ପ୍ରତିଷ୍ଠାନର ପ୍ରଥମ ପ୍ରକାଶନ । ଏହି ପ୍ରତିଷ୍ଠାନ ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତି ଓ ଇତିହାସ ସମ୍ପର୍କରେ ଏପରି ଅନେକ ପୁସ୍ତକ ଆଗାମୀ ଦିନରେ ପ୍ରକାଶ କରିବ ବୋଲି ଆଶା କରିବା ସହିତ ମୁଁ ଏହାର ଉତ୍ତରୋତ୍ତର ସମୃଦ୍ଧି କାମନା କରୁଛି ।

ଆଶା, ଏହି ପୁସ୍ତକ ପ୍ରାୟ ବିସ୍ମୃତ ରାୟବାହାଦୁର ନନ୍ଦକିଶୋର ଦାସଙ୍କୁ ଓଡ଼ିଶାବାସୀଙ୍କ ନିକଟରେ ପୁଣିଥରେ ପରିଚିତ କରାଇବାରେ ସହାୟକ ହେବ ।

ଭୁବନେଶ୍ୱର, ୫ ଜୁନ୍ ୨୦୧୩ -ଅସିତ ମହାନ୍ତି

# ସୂଚିପତ୍ର



ଆବିର୍ଭାବ : ୫ ଜୁନ୍, ୧୮୪୫
ତିରୋଧାନ : ୬ ଏପ୍ରିଲ୍, ୧୮୯୪

*'ଉତ୍କଳ ସମ୍ମିଳନୀ ସଭା'ର ପ୍ରତିଷ୍ଠାତା ରାୟବାହାଦୁର ନନ୍ଦକିଶୋର ଦାସଙ୍କ ସଂପର୍କରେ 'ଝଙ୍କାର' ପତ୍ରିକାର ୧୯୮୨ ଜୁଲାଇ, ୩୪ ବର୍ଷ, ଚତୁର୍ଥ ସଂଖ୍ୟାରେ ପ୍ରଫେସର ବାଉରୀବଂଧୁ କର ଲେଖିଥିଲେ ଏହି ପ୍ରବନ୍ଧ । ପରେ ତାହା କଟକର ଓଡ଼ିଶା ବୁକ୍ ଷ୍ଟୋର୍ ଦ୍ୱାରା ପ୍ରକାଶିତ 'ଜିଜ୍ଞାସାର ଜ୍ୟୋତି' ପୁସ୍ତକରେ ସଂକଳିତ ହୋଇଥିଲା । ସମ୍ଭବତଃ ଏହା ଥିଲା ମୃତ୍ୟୁର ପ୍ରାୟ ଶହେବର୍ଷ ପରେ ନନ୍ଦକିଶୋର ଦାସଙ୍କୁ ଓଡ଼ିଶାବାସୀଙ୍କୁ ଚିହ୍ନାଇବାର ଏକ ଉଲ୍ଲେଖନୀୟ ପ୍ରଚେଷ୍ଟା । ସେହି ସ୍ମରଣୀୟ ପ୍ରବନ୍ଧ :*

# ରାୟବାହାଦୁର ନନ୍ଦକିଶୋର ଦାସ ଓ ଉତ୍କଳ ସମ୍ମିଳନୀ ସଭା

**ପ୍ରଫେସର ବାଉରୀବଂଧୁ କର**

"ହେ ନନ୍ଦ କିଶୋର ସର୍ବଗୁଣରେ ନିପୁଣ
ଗାଇବାକୁ ତୁମ୍ଭ ଯଶ ନାହିଁ ମୋର ଗୁଣ ।
ଗଡ଼ଜାତ ରାଜାଙ୍କର ରଖିବାକୁ ମାନ,
କରିବି ମୁଁ କାହା ସଙ୍ଗେ ତୁମ୍ଭଙ୍କୁ ସମାନ ।
* * * ସାପ ନ ମରିବ ପୁଣି ବାଡ଼ି ନ ଭାଙ୍ଗିବ
ଏ କୌଶଳ ତୁମ୍ଭ ଛଡ଼ା କେ ଅବା ଜାଣିବ ।
ସିଭିଲ ସରବେଣ୍ଟ ଏଣ୍ଡ ପଲିଟି ଏଜେଣ୍ଟ ।
ଜୟ ଜୟ ଜୟ ଓଡ଼ିଶାର Monument ।"

(ଉତ୍କଳ ଭ୍ରମଣଂ, ଫକୀରମୋହନ)

ଫକୀରମୋହନଙ୍କ 'ଉତ୍କଳ ଭ୍ରମଣଂ'ର ଏହି କୀର୍ତ୍ତିବନ୍ତ ବ୍ୟକ୍ତିଟି ଆଜି ବିସ୍ମୃତ । ଓଡ଼ିଆ ଜାତି ଏଯାବତ୍ ଊନବିଂଶ ଶତକର ଓଡ଼ିଆପ୍ରାଣ ନନ୍ଦକିଶୋରଙ୍କ ଜୀବନ ଇତିହାସ ସମ୍ପର୍କରେ ଅଜ୍ଞ । ବ୍ରିଟିଶ ଶାସନକାଳୀନ ଓଡ଼ିଶାରେ ଏକଦା ଏହାଙ୍କର କର୍ମ-କୃତିତ୍ୱ ସମଗ୍ର ଉତ୍କଳବାସୀଙ୍କୁ ଉଦ୍‌ବୁଦ୍ଧ କରିଥିଲା । କାଳର ପ୍ରଖର ଗତିସ୍ରୋତରେ ସେ ଏବେ ବହୁ ଦୂରକୁ ବହିଯାଇଛନ୍ତି । ଊନବିଂଶ ଶତକ ଓଡ଼ିଶାର ସାମାଜିକ ଜୀବନରେ ଏହାଙ୍କର କୀର୍ତ୍ତିକଳାପ, ସାହସ-ବିକ୍ରମ, ଅତୀତର ପତ୍ରପତ୍ରିକା ପୃଷ୍ଠାରେ ଦେଖିଲେ ଯେ କୌଣସି ବ୍ୟକ୍ତି ଅଭିଭୂତ ହୋଇପଡ଼ିବ । ମହାନ୍ ବ୍ୟକ୍ତି, ଜାତି, ଅନୁଷ୍ଠାନ, ସଂସ୍କୃତି ଓ ଦେଶର କାର୍ଯ୍ୟକାରଣ ସମନ୍ୱିତ କାଳାନୁକ୍ରମିକ ବୃତ୍ତାନ୍ତର ସମାହାର

ରୂପେ ଯଦି ଇତିହାସକୁ ଗ୍ରହଣ କରାଯାଏ, ସେ ଦୃଷ୍ଟିରୁ ଜାତିର ଶୁଭଚିନ୍ତକ ଓ ମହାମାନବ ରୂପେ ରାୟବାହାଦୁର ନନ୍ଦକିଶୋରଙ୍କ ଜୀବନ ଇତିହାସ ବାସ୍ତବରେ ଅନୁଶୀଳନର ବିଷୟ ।

ରାୟବାହାଦୁର ନନ୍ଦକିଶୋର ଦାସ ୧୮୪୫ ମସିହା ଜୁନ୍ ମାସ ୫ ତାରିଖ ଗୁରୁବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଶ୍ରୀ ନରସିଂହ ଦାସ ତତ୍କାଳୀନ ବ୍ରିଟିଶ ସରକାରଙ୍କ ଅଧୀନରେ ଜନୈକ କିରାଣୀ ରୂପେ ନିଯୁକ୍ତି ପାଇ ପରେ ଡେପୁଟି କଲେକ୍ଟର ଭାବରେ ଅବସର ଗ୍ରହଣ କରିଥିଲେ । ନନ୍ଦକିଶୋର ବାଲ୍ୟକାଳରେ ଚାଟଶାଳୀରେ ବିଦ୍ୟା ଶିକ୍ଷା କରିଥିଲେ । ଛାତ୍ର ଭାବରେ ମେଧାବୀ ନ ହେଲେ ସୁଦ୍ଧା ନିଜର ଚାରିତ୍ରିକ ମହତ୍ତ୍ୱ ସକାଶେ ସେ ସମସ୍ତଙ୍କର ପ୍ରିୟଭାଜନ ହୋଇପାରିଥିଲେ । ନନ୍ଦକିଶୋର ଛାତ୍ର ଅବସ୍ଥାରେ ବିଭିନ୍ନ ସାମାଜିକ କାର୍ଯ୍ୟରେ ନିଜ ଦକ୍ଷତାର ପରିଚୟ ଦେଇଥିଲେ । ସେ ୧୮୬୪ ମସିହାରେ ଏଣ୍ଟ୍ରାନ୍ସ ପାସ୍ କରି ତତ୍କାଳୀନ ସରକାରଙ୍କ ଅଧୀନରେ କିରାଣୀ ରୂପରେ ଯୋଗଦାନ କଲେ । ତାଙ୍କର ଆଦର୍ଶ ଚରିତ୍ର, ନିଷ୍ଠାପର କର୍ମପ୍ରବୃତ୍ତି ଓ ଅକୁଣ୍ଠ ସେବା ମନୋବୃତ୍ତି ସକାଶେ ସେ ୧୮୭୧ ମସିହାରେ ସେ ଡେପୁଟି କଲେକ୍ଟର ଭାବରେ ପ୍ରଥମେ ପଦୋନ୍ନତି ପାଇଲେ । ପରେ ସେ ପ୍ରଥମ ଓଡ଼ିଆ ଜଏଣ୍ଟ ଇନ୍‌ସପେକ୍ଟର ଅଫ୍ ସ୍କୁଲ୍‌ସ୍ ଭାବରେ ୧୮୭୫ ମସିହାରେ ନିଯୁକ୍ତି ପାଇଲେ । ୧୮୭୭ ମସିହା ପର୍ଯ୍ୟନ୍ତ ସେ ଏହି ପଦବୀରେ ରହି ମୃତ୍ୟୁ ପର୍ଯ୍ୟନ୍ତ (୬।୪।୧୮୯୪) କେନ୍ଦୁଝର, ବୌଦ୍ଧ, କନ୍ଧମାଳ ଓ ଅନୁଗୁଳ ପ୍ରଭୃତି ସ୍ଥାନରେ ପଲିଟିକାଲ ଏଜେଣ୍ଟ, କଲେକ୍ଟର ଓ ଜିଲ୍ଲା ଅଫିସର ଭାବରେ କାର୍ଯ୍ୟ ନିର୍ବାହ କରିଥିଲେ । ତାଙ୍କର କର୍ମନିଷ୍ଠା ଓ ବୁଦ୍ଧିମତ୍ତା ଯୋଗୁ ବ୍ରିଟିଶ ସରକାର ୧୮୯୦ ମସିହାରେ ତାଙ୍କୁ 'ରାୟବାହାଦୁର' ଉପାଧିରେ ଭୂଷିତ କରିଥିଲେ ।

ରାୟବାହାଦୁର ନନ୍ଦକିଶୋର ୧୮୭୫ ମସିହାରେ ଜଏଣ୍ଟ ଇନସ୍‌ପେକ୍ଟର ଥିବା ଅବସ୍ଥାରେ ଓଡ଼ିଶାରେ ଶିକ୍ଷାର ଉନ୍ନତିକଳ୍ପେ ବହୁ କାର୍ଯ୍ୟ କରିଥିଲେ । ସେ ଛାତ୍ରମାନଙ୍କ ଉଦ୍ଦେଶ୍ୟରେ ଓଡ଼ିଆ ପାଠ୍ୟପୁସ୍ତକ ପ୍ରଣୟନ ପାଇଁ ତତ୍କାଳୀନ ଶିକ୍ଷାପ୍ରେମୀ ବୁଦ୍ଧିଜୀବୀମାନଙ୍କୁ ଆହ୍ୱାନ ଦେଇଥିଲେ । ତାଙ୍କରି ଉଦ୍ୟମରେ ଓଡ଼ିଆ ପାଠ୍ୟପୁସ୍ତକ ବହୁ ସଂଖ୍ୟାରେ ବିଦ୍ୟାଳୟମାନଙ୍କରେ ଶିକ୍ଷାଦାନ ନିମିତ୍ତ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ହୋଇଥିଲା । ଉତ୍ସାହୀ ଯୁବଶିକ୍ଷକମାନଙ୍କୁ ନନ୍ଦକିଶୋରଙ୍କ ପ୍ରେରଣା ବାସ୍ତବିକ ସ୍ମରଣୀୟ । ସେ ରାଧାନାଥ ରାୟଙ୍କୁ ଯେଭଳି ଉତ୍ସାହ ଦେଇଛନ୍ତି, ତାହା ୧୮୭୫-୭୬ ମସିହାର Orissa Joint Inspector's Educational Report ଦେଖିଲେ ସହଜରେ ଅନୁଭବ କରିହେବ । ସେଥିରେ ସେ ଲେଖିଛନ୍ତି,

"Balasore takes the lead in Primary Education, the Patsalas are well attended and are taught for the most part by well qualified teach-

ers and altogether exhibit a vigorous and healthy life not approached elsewhere in Orissa. Among other causes, Balasore schools owe their success to intelligent supervision by the Deputy Inspector, Babu Radhanath Rai, who takes more than an official interest in his work."

Sd/ N.K. Das

Joint Inspector of Schools

ପୁଣି ସେ ରାଧାନାଥଙ୍କ ଚରିତ୍ର, କର୍ତ୍ତବ୍ୟ ଓ ବୁଦ୍ଧିମତ୍ତା ସମ୍ବନ୍ଧରେ ଉଲ୍ଲେଖ କରି କହିଛନ୍ତି, "Radhanath Rai, 3rd Grade Deputy Inspector, Balasore, deserves high commendations for the intelligence, tact, earnestness which he has shown in the execution of his duties." ନନ୍ଦକିଶୋରଙ୍କ ସୁପାରିଶକ୍ରମେ ଜନ୍ ବୀମସ୍ ସାହେବ ରାଧାନାଥଙ୍କ ନାମ ଜଏଣ୍ଟ ଇନ୍‌ସପେକ୍ଟର ପଦବୀ ପାଇଁ ଅନୁମୋଦନ କରିଥିଲେ ।

ନନ୍ଦକିଶୋର ପଲିଟିକାଲ ଏଜେଣ୍ଟ ଥିବାବେଳେ କେନ୍ଦୁଝରର ଭୂୟାଁ ଆନ୍ଦୋଳନ ବିଷୟ ଅନୁଧାନ କରିଥିଲେ । ଏ ସମୟରେ ନନ୍ଦକିଶୋରଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଥିଲେ ଫକୀରମୋହନ । କେନ୍ଦୁଝର ଭୂୟାଁ ଆନ୍ଦୋଳନରେ ଜଣେ ପଦସ୍ଥ କର୍ମଚାରୀ ଭାବରେ ସେ ନ୍ୟାୟପୁରୁଷ ଭାବରେ ଭୂମିକା ଗ୍ରହଣ କରିଥିଲେ । ସେ କେନ୍ଦୁଝରରେ ସରକାରୀ କାର୍ଯ୍ୟରେ ଏପରି ବ୍ୟସ୍ତ ରହିବାରୁ ତାଙ୍କର ସ୍ୱାସ୍ଥ୍ୟ ନଷ୍ଟ ହୋଇ ଯାଇଥିଲା । ସେଠାରୁ ସେ ଅନୁଗୁଳକୁ ଡେପୁଟି କମିଶନର ହୋଇ ସ୍ଥାନାନ୍ତର ହୋଇଥିଲେ । ଅନୁଗୁଳରେ ଡେପୁଟି କମିଶନର ଥିବା ଅବସ୍ଥାରେ ସେ ପ୍ରଥମ କରି ଅନୁକୂଳ ରେଗୁଲେସନ୍ ପ୍ରଣୟନ କରିଥିଲେ । ସେ ସରକାରୀ ବୃତ୍ତିରେ ଥାଇ ସୁଦ୍ଧା ଅନେକ ଜନମଙ୍ଗଳ ଅନୁଷ୍ଠାନ ସହ ସଂପୃକ୍ତ ଥିଲେ । ସେଗୁଡ଼ିକ ମଧ୍ୟରୁ ୧୮୮୯ ମସିହାର 'ଉତ୍କଳ ସମ୍ମିଳନୀ ସଭା' ଅନ୍ୟତମ ।

୧୮୮୯ ମସିହାର 'ଉତ୍କଳ ସମ୍ମିଳନୀ ସଭା' ନାମ ଶୁଣିଲେ ହୁଏତ କେତେକ ଏହାକୁ ସନ୍ଦେହ କରିବେ । କାରଣ 'ଉତ୍କଳ ସମ୍ମିଳନୀ' କହିଲେ ସମସ୍ତେ ୧୯୦୩ ମସିହା ଡିସେମ୍ବର ୩୦ ତାରିଖରେ ମଧୁସୂଦନ ଦାସଙ୍କ ନେତୃତ୍ୱରେ ସଂଘଟିତ ଅନୁଷ୍ଠାନକୁ ସ୍ମରଣ କରନ୍ତି । କିନ୍ତୁ ଏହା ପୂର୍ବରୁ ନନ୍ଦକିଶୋର ଦାସ ଉତ୍କଳବାସୀ କରଣମାନଙ୍କର ମଙ୍ଗଳ କଳ୍ପେ 'ଉତ୍କଳ ସମ୍ମିଳନୀ ସଭା' ଆରମ୍ଭ କରିଥିଲେ । କରଣମାନଙ୍କ ମଙ୍ଗଳ କଳ୍ପେ ଏହାର ଆରମ୍ଭ ହୋଇଥିଲେ ମଧ ଭବିଷ୍ୟତରେ ଅନ୍ୟ ଜାତିର ଉନ୍ନତି ବିଧାନ କରିବା ଏହାର ଅନ୍ୟତମ ଲକ୍ଷ୍ୟ ଥିଲା । ଏ ସମ୍ପର୍କରେ 'ଉତ୍କଳ ଦୀପିକା'ରେ ଉଲ୍ଲେଖ ଅଛି, "ନବବର୍ଷର ନୂତନ ଦିନ ଅର୍ଥାତ୍ ଚଳିତ ମାସ ୧ ତାରିଖରେ ଏ ନଗରବାସୀ କରଣମାନେ ସନ୍ଧ୍ୟା ସମୟରେ ବାବୁ ନନ୍ଦକିଶୋର ଦାସଙ୍କ ଘରେ ଏକତ୍ରିତ

ହୋଇ ଉପରଲିଖିତ ସଭା ସ୍ଥାପନ କରିଅଛନ୍ତି । ଯଦ୍ୟପି କି ସଭାର ନାମର ବ୍ୟାପ୍ତି ଏକପ୍ରକାର ଅସୀମ ଅଟଇ କିନ୍ତୁ ଏଥିର ଉଦ୍ଦେଶ୍ୟ କେବଳ କରଣମାନଙ୍କର ମଙ୍ଗଳ ସାଧନ ଅଟଇ; ଏତଏବ ଏଥିର ନାମ 'କରଣ ସମ୍ମିଳନୀ ସଭା' ହୋଇଥିଲେ ଠିକ୍ ହୋଇଥା'ନ୍ତା । ବୋଧ ହୁଅଇ ଏ ପଛେ ଉତ୍କଳବାସୀ ଅନ୍ୟାନ୍ୟ ଜାତିଙ୍କର ଉନ୍ନତି ବିଷୟରେ ସଭା ଚେଷ୍ଟିତ ହେବେ ବୋଲି ଆଶା କରି ବିସ୍ତୃତ ନାମ ଦିଆଯାଇଅଛି । ଫଳତଃ ଉପରଲିଖିତ ମତେ କେତେକ ଜଣ ଭଦ୍ରଲୋକ ଏକତ୍ରିତ ହୋଇ ବାବୁ ଗଣେଶ୍ୱର ଦାସଙ୍କୁ ସଭାପତି ପଦରେ ବରଣପୂର୍ବକ ସଭା ସ୍ଥାପନରେ ପ୍ରାରମ୍ଭିକ କାର୍ଯ୍ୟମାନ ଏହିପରି ସ୍ଥିର କଲେ । ଯଥା– ଏ ସଭାର ସଭାପତି ବାବୁ ନନ୍ଦକିଶୋର ଦାସ, ସହକାରୀ ସଭାପତି ବାବୁ ହରେକୃଷ୍ଣ ଦାସ ଏବଂ ସମ୍ପାଦକ ବାବୁ ରାସବିହାରୀ ନାୟକ ହେଲେ ଓ ସଭାର ନିୟମାବଳୀର ପ୍ରସ୍ତୁତ କରିବା କେତେକ ଜଣ ସଭ୍ୟ ନିଯୁକ୍ତ ହେଲେ । ସଭାର ଉଦ୍ଦେଶ୍ୟ ସଂପର୍କରେ ତିନୋଟି କଥାର ଅବତାରଣା ହୋଇଅଛି । ଯଥା– (୧) ମୋଫସଲରୁ ଯେଉଁ ଛାତ୍ରମାନେ ଏ ନଗରର ଉଚ୍ଚ ବିଦ୍ୟାଳୟମାନଙ୍କରେ ପଢ଼ିବାକୁ ଆସିବେ ଏବଂ ଯାହାଙ୍କର କେହି ଅଭିଭାବକ ଏଠାରେ ନାହିଁ, ସେମାନଙ୍କର ତତ୍ତ୍ୱାବଧାରଣ । (୨) ଅର୍ଥାଭାବରୁ ଯେଉଁ ଛାତ୍ରମାନେ ବିଦ୍ୟାଶିକ୍ଷା କରିପାରୁ ନାହାନ୍ତି ସେମାନଙ୍କୁ ସାହାଯ୍ୟ ଦାନ ଏବଂ (୩) ବିବାହକ୍ରିୟା ଘଟିତ ଅନ୍ୟାନ୍ୟ ଓ ଅପରିମିତ ବ୍ୟୟ ନିର୍ଦ୍ଧାରଣ ।" (ଉତ୍କଳ ଦୀପିକା, ୨୪।୨, ତା୧୨।୧।୧୮୮୯, ପୃ୧୧) ନନ୍ଦକିଶୋରଙ୍କ ଏ ଉଦ୍ୟମକୁ କେତେକ ହୁଏତ କ୍ଷୁଦ୍ର, ଜାତିଆଣ ମନୋଭାବ ରୂପେ ଆକ୍ଷେପ କରିପାରନ୍ତି; ମାତ୍ର ସୂକ୍ଷ୍ମ ଦୃଷ୍ଟିକୋଣ ନେଇ ବିଶ୍ଳେଷଣ କଲେ ଏହା ନନ୍ଦକିଶୋରଙ୍କ ସମାଜସଂସ୍କାର ଲିପ୍‌ସା ଓ ଆଦର୍ଶବାଦର ସ୍ମାରକୀ ରୂପେ ମନେହୁଏ । ତଦାନୀନ୍ତନ କାଳରେ କରଣମାନେ ସେମାନଙ୍କ ସାମାଜିକ ବ୍ୟବସ୍ଥାରେ ଜୀବନବ୍ୟାପୀ ମାନସିକ ଦୁଃଖ ଅନୁଭବ କରୁଥିବାବେଳେ ନନ୍ଦକିଶୋର ସେମାନଙ୍କ ତଥାକଥିତ ଆଭିଜାତ୍ୟର ଆଟୋପ ମଧ୍ୟରୁ ପ୍ରକୃତ ମାର୍ଗ 'ଉତ୍କଳ ସମ୍ମିଳନୀ ସଭା' ମାଧ୍ୟମରେ ନିର୍ଦ୍ଦେଶ କରିଥିଲେ । ନନ୍ଦକିଶୋରଙ୍କ ଏହି ବିବାହ ସଂସ୍କାର ଅନ୍ୟାନ୍ୟ ଜାତିର ଲୋକମାନଙ୍କ ଦ୍ୱାରା ମଧ୍ୟ ଆଦୃତ ହୋଇଥିଲା । ସେ ସଭାକୁ ବ୍ରାହ୍ମଣ ଓ ଅନ୍ୟ ଜାତିର ଦର୍ଶକମାନେ ଆଗ୍ରହର ସହ ଯାଉଥିଲେ ।

ଉନବିଂଶ ଶତକର ସମାଜରେ ବ୍ରାହ୍ମଣମାନଙ୍କର ଅଖଣ୍ଡ ପ୍ରତିପତ୍ତି ଥିଲା । ନନ୍ଦକିଶୋର ଅବ୍ରାହ୍ମଣ ହୋଇ ଯେପରି ଭାବରେ ସମାଜରେ ସଂସ୍କାର ଆଣିବାର ପ୍ରୟାସ କରିଅଛନ୍ତି, ତାହା ତାଙ୍କର ସଂସ୍କାରପ୍ରିୟ ଦୃଷ୍ଟିଭଙ୍ଗୀର ପରିଚାୟକ । 'ଉତ୍କଳ ସମ୍ମିଳନୀ ସଭା' ଜରିଆରେ ସେ ଏହି ସଂସ୍କାରମୂଳକ ଭାବନାର ପ୍ରସାର କରିବାକୁ ଚେଷ୍ଟା କରିଛନ୍ତି । ନନ୍ଦକିଶୋରଙ୍କର ଏହି ଗଠନମୂଳକ କାର୍ଯ୍ୟରେ ପଣ୍ଡିତ ଗୋବିନ୍ଦ ରଥଙ୍କ ପରି ବ୍ରାହ୍ମଣମାନେ ଓ ଭାଗବତ ଭଞ୍ଜଙ୍କ ପରି କ୍ଷତ୍ରିୟ ପୁରୁଷମାନେ ସହଯୋଗ କରିଥିଲେ । 'ଉତ୍କଳ ସମ୍ମିଳନୀ ସଭା'ର ଦ୍ୱିତୀୟ ଅଧିବେଶନରେ ଏ ସକାଶେ ଅନ୍ୟାନ୍ୟ ବହୁ ଜାତିର ଲୋକେ ସହଯୋଗ କରିଥିଲେ । 'ଉତ୍କଳ ଦୀପିକା'ରେ ଉଲ୍ଲେଖ

ଅଛି, "ଏଥର ବ୍ରାହ୍ମଣାଦି ପ୍ରାୟ ଅନେକ ଦର୍ଶକ ଉପସ୍ଥିତ ଥିଲେ।" (ଉତ୍କଳ ଦୀପିକା ୯।୩।୧୮୮୯, ଅତିରିକ୍ତ ସଂଖ୍ୟା) 'ଉତ୍କଳ ସମ୍ମିଳନୀ ସଭା'ର ଏହି ଦ୍ୱିତୀୟ ଅଧିବେଶନରେ ଦରିଦ୍ର କରଣ ଛାତ୍ରମାନଙ୍କ ପାଇଁ ଛାତ୍ରାବାସ ସମସ୍ୟା, ଦରିଦ୍ର ଛାତ୍ରମାନଙ୍କୁ ସାହାଯ୍ୟ ଓ ବିବାହ ସମସ୍ୟା ପ୍ରଭୃତି ଆଲୋଚିତ ହୋଇଥିଲା। ସାଂପ୍ରତିକ ପରିପ୍ରେକ୍ଷୀରେ ନନ୍ଦକିଶୋର ପ୍ରମୁଖଙ୍କ ପରିକଳ୍ପିତ ବିବାହ ବିଧାନର ସଂସ୍କାର ତାତ୍ପର୍ଯ୍ୟପୂର୍ଣ୍ଣ।

ଊନବିଂଶ ଶତକରେ ସମ୍ଭ୍ରାନ୍ତ ପରିବାରମାନଙ୍କରେ ବିବାହ ଏକ ଗୁରୁଦାୟିତ୍ୱ ଥିଲା। କନ୍ୟାର ବିବାହ ପାଇଁ କନ୍ୟାପିତାମାନେ ମାନସିକ ଜଞ୍ଜାଳରେ ରହୁଥିଲେ। ବଙ୍ଗରେ ସଂସ୍କାରକ ରାଜା ରାମମୋହନ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପ୍ରମୁଖ ଯେପରି ସେସବୁ ସମସ୍ୟାକୁ ଦୂର କରିବାକୁ ବଦ୍ଧପରିକର ହୋଇଥିଲେ, ଓଡ଼ିଶାରେ ପ୍ରଥମ କରି ନନ୍ଦକିଶୋରଙ୍କ ନେତୃତ୍ୱରେ ବାନାମ୍ବର ମହାନ୍ତି, ଭାଗବତ ଭଞ୍ଜ (ସୁଯୋଗ୍ୟ ସନ୍ତାନ ଅଭିରାମ ଭଞ୍ଜଙ୍କ ପିତା), କୃଷ୍ଣମୋହନ ପଟ୍ଟନାୟକ, ଦାମୋଦର ପଟ୍ଟନାୟକ ପ୍ରମୁଖ ଉଦ୍ୟମ କରିଥିଲେ। (ଉତ୍କଳ ଦୀପିକା, ୯।୩।୧୮୮୯, ଅତିରିକ୍ତ ସଂଖ୍ୟା) ଏହାପରେ ପଣ୍ଡିତ ଗୋପବନ୍ଧୁ ଦାସ ଏହି ବିବାହ ସମସ୍ୟା ପ୍ରତି ସଚେତନ ହୋଇଥିଲେ। ସେ 'ମୁକୁର'ରେ 'ବିବାହରେ ଅର୍ଥ ପ୍ରସଙ୍ଗ' ଶୀର୍ଷକ ଏକ ଦୀର୍ଘ ପ୍ରବନ୍ଧ ରଚନା କରିଥିଲେ। ଗୋପବନ୍ଧୁଙ୍କ ଏହି ପ୍ରବନ୍ଧ, ମୁକୁର-୨/୯-୧୦, ୩/୨-୪, ୪/୩-୪ ସଂଖ୍ୟା ଗୁଡ଼ିକରେ ପ୍ରକାଶିତ। ନନ୍ଦକିଶୋର 'ଉତ୍କଳ ସମ୍ମିଳନୀ ସଭା'ରେ ବିବାହ ସମ୍ପର୍କରେ ଯେଉଁ ପ୍ରସ୍ତାବମାନ ଗ୍ରହଣ କରିଥିଲେ, ସେ ମଧ୍ୟରୁ କେତେକ ପାଠକଙ୍କ ଅବଗତି ସକାଶେ ପ୍ରଦାନ କରାଗଲା। ସେ ସବୁର ସଂକ୍ଷିପ୍ତ ସ୍ୱରୂପ ଏହିପରି–

**ବିବାହ ପ୍ରସ୍ତାବ–**

ବିବାହ କାର୍ଯ୍ୟ ଉପଲକ୍ଷରେ ଯେ ଯାହା ବ୍ୟୟ କରିବାକୁ ଇଚ୍ଛା କରନ୍ତି, ସେ ତାହା କରିପାରନ୍ତି। ସେ ବିଷୟ ସଭାରେ ଆଲୋଚନା କରିବାର ଆବଶ୍ୟକତା ନାହିଁ। କେବଳ ସାମାଜିକ ନିୟମ ଓ କୌଳିକ ପ୍ରଥାନୁସାରେ ଯାହା ବହୁ ବ୍ୟୟ ହୁଏ, ତାହା ଊଣା କରିବା ଉଦ୍ଦେଶ୍ୟରେ ନିମ୍ନଲିଖିତ ନିୟମମାନ ହେବା ଉଚିତ।

(କ) କୌଣସି ଲୋକର ଶୁଭାଶୁଭ କାର୍ଯ୍ୟ ଉପସ୍ଥିତ ହେଲେ ଆପଣା ବନ୍ଧୁବାନ୍ଧବମାନଙ୍କୁ ନିମନ୍ତ୍ରଣ କରନ୍ତି ଓ ଏପରି ନିମନ୍ତ୍ରଣ ଆବଶ୍ୟକ ଅଟେ। ମାତ୍ର ଯେଉଁମାନଙ୍କୁ ନିମନ୍ତ୍ରଣ କରାଯାଏ, ସେମାନେ ସାହାଯ୍ୟ କରିବା ଦୂରେ ଥାଉ, କାର୍ଯ୍ୟଗ୍ରାହୀ ଲୋକକୁ ଅଧିକ ଦାୟଗ୍ରସ୍ତ କରନ୍ତି। ସେମାନେ ନିଜେ ଗଲେ ସେମାନଙ୍କର ବେହେରା ଖର୍ଚ୍ଚ କାର୍ଯ୍ୟଗ୍ରାହୀକୁ ଦେବାକୁ ପଡ଼େ ଓ ଗଲେ ବା ନ ଗଲେ ନିଜେ ବେଭାର ପଠାଇ ଖର୍ଚ୍ଚାନ୍ତ ହୁଅନ୍ତି ଓ କାର୍ଯ୍ୟଗ୍ରାହୀକୁ ତଦପେକ୍ଷା ବିଶେଷ କ୍ଷତିଗ୍ରସ୍ତ କରାନ୍ତି। ଏ ପ୍ରଥା ଭଲ ନୁହେଁ। କୌଣସି ଲୋକର ସେପରି କାର୍ଯ୍ୟ ଉପସ୍ଥିତ ହେଲେ ପରସ୍ପର ଆପଣାକୁ ଦାୟଗ୍ରସ୍ତ ନ କରି ସାହାଯ୍ୟ କରିବା ଉଚିତ। * * *

(ଖ) ବିବାହ କାର୍ଯ୍ୟ ଉପଲକ୍ଷରେ ନିମନ୍ତ୍ରଣ ହେଲେ ଯାନବାହନ ନେଇ ଆସିବାକୁ କାହାରିକୁ ନିମନ୍ତ୍ରଣ ପତ୍ରରେ ଲେଖା ହେବ ନାହିଁ ।

(ଗ) ନିମନ୍ତ୍ରଣ ଅନୁସାରେ କେହି ବାହାଘରଠାକୁ ଗଲେ ସୁଆରିଖର୍ଚ୍ଚା ପ୍ରଭୃତି ଓ ଲୁଗା ବେଭାର ତାକୁ ଦିଆଯିବ ନାହିଁ ଓ ସେ କାର୍ଯ୍ୟଗ୍ରାହୀକୁ ଉପରୋକ୍ତ ଅନୁସାରେ ଯେଉଁ ମଙ୍ଗଳଲୋଟା ବେଭାର ଦେଇଥିବେ ତାହା ମଧ୍ୟ ତାଙ୍କୁ ଫେରାଇ ଦିଆଯିବ ନାହିଁ । * * *

(ଘ) ମଙ୍ଗଳାମଙ୍ଗଳ ଯେକୌଣସି କାର୍ଯ୍ୟରେ କାର୍ଯ୍ୟଗ୍ରାହୀଠାକୁ ଯେ ବେଭାର ପଠାଯାଏ ତହିଁରେ ବେଭାର ଫେରତ ହେବା ପ୍ରଥା ଏକାବେଳେକେ ରହିତ ହେବ । * * *

(ଙ) ବିବାହ ସମ୍ବନ୍ଧ ସ୍ଥିର କଲାବେଳେ ପ୍ରଥମେ କନ୍ୟାକର୍ତ୍ତା କେହି ସାମନ୍ତ ମର୍ଯ୍ୟାଦା ଓ କେତେ ଯୌତୁକ ସାମଗ୍ରୀ ଦେବେ ଏହା ଅନେକ ସ୍ଥାନରେ ସ୍ଥିର ହେବାର ପ୍ରଥା ଅଛି । ଏ ପ୍ରଥା ଭଲ ନୁହେଁ । କେବଳ ଉପଯୁକ୍ତ ପାତ୍ର ବିବେଚନାରେ ସମ୍ବନ୍ଧ ସ୍ଥିର କରିବା ଉଚିତ । * * *

(ଚ) ବରପକ୍ଷକୁ କନ୍ୟାପକ୍ଷରୁ ପାଥେୟ ଓ ଲିଆଜିମାତ ବିଦାକୀ ସ୍ୱରୂପ ଟଙ୍କା ଓ ଲୁଗା ଦେବାର ପ୍ରଥା ଅଛି । ଏହା ଗୋଟିଏ କୁପ୍ରଥା । ଉଭୟ ପକ୍ଷ କାର୍ଯ୍ୟଗ୍ରାହୀ । ସୁତରାଂ ଏକ ପକ୍ଷ ଅନ୍ୟପକ୍ଷର ବ୍ୟୟ ସାହାଯ୍ୟ କରିବାରେ କୌଣସି କାରଣ ନାହିଁ । ଅତଏବ ନିୟମ କରାଯାଉ ଯେ କନ୍ୟାପକ୍ଷରୁ ବରପକ୍ଷକୁ ପାଥେୟ କି ଲିଆଜିମାତ ବିଦାକୀ ଦେବାର ପ୍ରଥା ରହିତ ହେବ ଏବଂ କୌଣସି କୌଣସି ସ୍ଥଳେ ଯେବେ ବରପକ୍ଷରୁ ବରଧରା ସଙ୍ଗେ ଆସିଥିବା ଲିଆଜିମାତଙ୍କ ବିଦାକୀ ସ୍ୱରୂପ କିଛି ଦେବାର ପ୍ରଥା ଥାଏ, ତାହା ମଧ୍ୟ ରହିତ ହେବ । * * *

(ଛ) ବର୍ତ୍ତମାନ ପ୍ରଥା ଅଛି ଯେ ବର ସହିତ ଯେଉଁ ସାମନ୍ତମାନେ ଯାଆନ୍ତି, ସେମାନେ ଚାଲି ଯାଆନ୍ତି ନାହିଁ । କୌଣସି ବାହନରେ ଯାଆନ୍ତି । ସମସ୍ତଙ୍କ ପକ୍ଷରେ ଏହା ସହଜ ନୁହେଁ । * * * ଯେଉଁମାନେ ଯିବାକୁ ଇଚ୍ଛା କରିବେ ଚାଲିକରି ବା ଆପଣା ବ୍ୟୟରେ ବାହନରେ ବର ଘରକୁ ଯିବେ । * * * (ଉତ୍କଳ ଦୀପିକା, ୯ । ୩ । ୧୮୮୯, ଅତିରିକ୍ତ ସଂଖ୍ୟା)

ନନ୍ଦକିଶୋର ସମ୍ଭ୍ରାନ୍ତ ହିନ୍ଦୁ ବିବାହରେ ରହିଥିବା ନାନାଦି ରକ୍ଷଣଶୀଳତାକୁ ଦୂର କରିବା ପାଇଁ ଦୃଢ଼ ପଦକ୍ଷେପ ନେଇଥିଲେ । ଏ ପାଇଁ ସେ ଜନମତ ଜାଗ୍ରତ କରିବା ସକାଶେ ପୁରୀ, ଖୋର୍ଦ୍ଧା, ଯାଜପୁର, ଭଦ୍ରକ, କେନ୍ଦ୍ରାପଡ଼ା, ଗଞ୍ଜାମ ଓ ଗଡ଼ଜାତ ପ୍ରଭୃତି ଅଞ୍ଚଳକୁ ବିବାହ ସଂସ୍କାରର ଛାପା ନିର୍ଦ୍ଧାରଣଗୁଡ଼ିକୁ ପଠାଇବାର ସୁବନ୍ଦୋବସ୍ତ କରିଥିଲେ ।

ନନ୍ଦକିଶୋରଙ୍କ 'ଉତ୍କଳ ସମ୍ମିଳନୀ ସଭା'ର ନାମ ୧୮୯୪ ମସିହା ପରେ ସମ୍ପୂର୍ଣ୍ଣ ଲୋପ ପାଇଥିଲା । ତାଙ୍କ ପ୍ରତିଷ୍ଠିତ 'ଉତ୍କଳ ସମ୍ମିଳନୀ ସଭା' ତାଙ୍କର ମୃତ୍ୟୁ ପରେ ବିଲୟ ଭଜିଥିଲା । ପରେ ଯେତେବେଳେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ନେତୃତ୍ୱରେ ଉତ୍କଳର ଏକତ୍ରୀକରଣ ପାଇଁ ଜାତୀୟ ଆନ୍ଦୋଳନ ମୁଣ୍ଡଟେକି ଉଠିଲା, ପୁଣି ଭିନ୍ନ ଭାବରେ 'ଉତ୍କଳ ସମ୍ମିଳନୀ' ୧୯୦୩

ଡିସେମ୍ବର ୩୦ ତାରିଖରେ ଆରମ୍ଭ ହେଲା । ଯେତେଦୂର ମନେହୁଏ ଉତ୍କଳଗୌରବ ମଧୁସୂଦନ ଏହି ନାମ ନିର୍ବାଚନ ପାଇଁ ହୁଏତ ମାନସରେ ଥରେ ହେଲେ ନିଶ୍ଚୟ ନନ୍ଦକିଶୋରଙ୍କ 'ଉତ୍କଳ ସମ୍ମିଳନୀ ସଭା'କୁ ସ୍ମରଣ କରିଥିବେ । କାରଣ ନନ୍ଦକିଶୋର କୌଣସି ରାଜନ୍ୟବର୍ଗଙ୍କ ସହଯୋଗ ନ ନେଇ ଏକକ ଉଦ୍ୟମରେ ଏ ଜାତିର ସାମାଜିକ, ରାଜନୈତିକ ଜୀବନର ବିକାଶ ପାଇଁ ଏହି ସଭା ମାଧ୍ୟମରେ ଯେପରି ଉଦ୍ୟମ କରିଥିଲେ, ତାହା ଊନବିଂଶ ଶତକର କ୍ୱଚିତ୍ ଓଡ଼ିଆଙ୍କ ଠାରେ ପରିଲକ୍ଷିତ । ଏ ହେତୁ ପ୍ରତ୍ୟେକ ଓଡ଼ିଶାବାସୀର ସେ ସ୍ମରଣୀୟ ସାଧକ ।

ନନ୍ଦକିଶୋର ଊନବିଂଶ ଶତକ ଓଡ଼ିଶାର ଜଣେ ବିଶିଷ୍ଟ ଶିକ୍ଷାବିତ୍, ସ୍ୱଦେଶପ୍ରେମୀ ଓ ଗୁଣଗ୍ରାହୀ ପ୍ରଶାସକ । ସେ ଓଡ଼ିଶା ଶିକ୍ଷା ବିଭାଗର ପ୍ରଥମ ଜଏଣ୍ଟ ଇନ୍‌ସପେକ୍ଟର । ସେ ଊନବିଂଶ ଶତକର ବ୍ରିଟିଶ ସାହେବମାନଙ୍କ ନିକଟରେ ଓଡ଼ିଶାର ଦାବୀକୁ ଉପସ୍ଥାପିତ କରିଥିଲେ । ବଙ୍ଗ-ବିହାର-ଓଡ଼ିଶା ଶାସନରେ ଓଡ଼ିଆଙ୍କ ସ୍ୱାର୍ଥ-ସଂରକ୍ଷଣ ତାଙ୍କର ଚେଷ୍ଟାରେ ସମ୍ଭବ ହୋଇଥିଲା । ଜାତିର ମାନସମ୍ମାନକୁ ସେ ବିଦେଶୀ ଶାସକମାନଙ୍କ ନିକଟରେ ରକ୍ଷା କରିଥିଲେ । T. E. Ravenshaw ଓ John Beamsଙ୍କ ପରି କମିଶନରମାନେ ତାଙ୍କର ଗୁଣାବଳୀ ସମ୍ପର୍କରେ ଯାହା ଲେଖିଛନ୍ତି, ତାହା ତାତ୍ପର୍ଯ୍ୟପୂର୍ଣ୍ଣ । T. E. Ravenshaw ସାହେବଙ୍କ ଭାଷାରେ; "Mr Das impressed me by his honesty. He is dutiful and during his stewardship of the Education Department as Joint Inspector of Schools, the Department was in the fore-front of the academic life...।" ଗୋରା ସାହେବମାନଙ୍କ ନିକଟରୁ ଏପରି ପ୍ରଶଂସାସୂଚକ ମନ୍ତବ୍ୟ ଊନବିଂଶ ଶତକର ଜଣେ ଓଡ଼ିଆ ପକ୍ଷରେ ଯଥାର୍ଥରେ ଗର୍ବ ଓ ଗୌରବର ବିଷୟ ।

୧୮୯୪ ମସିହା ଏପ୍ରିଲ ୬ ତାରିଖ ଦିନ, ରାୟବାହାଦୁର ନନ୍ଦକିଶୋର ଦାସଙ୍କ ମୃତ୍ୟୁରେ ସମଗ୍ର ଓଡ଼ିଶାରେ ଶୋକର ଛାୟା ଖେଳି ଯାଇଥିଲା । ତତ୍କାଳୀନ ସରକାରଙ୍କ ସଚିବ କଟନ୍ ସାହେବ ତାଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ ପୂର୍ବକ ଲେଖିଛନ୍ତି, "He sacrificed himself to the call of Duty." । କର୍ତ୍ତବ୍ୟର ଅନୁପ୍ରେରଣାରେ ଜୀବନ-ଉତ୍ସର୍ଗ କରିଥିବା ନନ୍ଦକିଶୋର ଏବଂ ତାଙ୍କ ସାମାଜିକ ଜୀବନର ସ୍ୱପ୍ନ 'ଉତ୍କଳ ସମ୍ମିଳନୀ ସଭା' (୧୮୮୯) ସମ୍ପର୍କରେ ତାଙ୍କର ଉତ୍ତରଦାୟାଦମାନେ ଅଧୁନା ସମ୍ପୂର୍ଣ୍ଣ ବିସ୍ମୃତ । କିନ୍ତୁ ନନ୍ଦକିଶୋରଙ୍କ ପରି କର୍ମଠ, ଆଦର୍ଶବାନ୍ ଓ ସ୍ୱଦେଶପ୍ରେମୀଙ୍କ ଜୀବନୀ ନିଶ୍ଚିତ ଭାବରେ ଉଚ୍ଚାଭିଳାଷୀ ବ୍ୟକ୍ତିଙ୍କ ମନରେ ସାନ୍ତ୍ୱନା ଓ ଉତ୍ସାହ ପ୍ରଦାନ କରିବ ।

ଠଠଠ

*ରାଉରକେଲାର 'ପ୍ରଗତି ଉତ୍କଳ ସଂଘ' ପକ୍ଷରୁ ଅକ୍ଟୋବର ୨୦୦୫ରେ ପ୍ରକାଶିତ 'ଉତ୍କଳ ସମ୍ମିଳନୀ (୧୯୦୩-୧୯୩୬), ପୁସ୍ତକର 'ଗ୍ରନ୍ଥ-ପ୍ରବେଶ' ଶୀର୍ଷକ ଭୂମିକାରେ ସମ୍ପାଦକ ଦେବେନ୍ଦ୍ର କୁମାର ଦାଶ ସେତେବେଳର ଓଡ଼ିଆଙ୍କ ମଧ୍ୟରେ ଏକମାତ୍ର ସିଭିଲିୟାନ୍ ନନ୍ଦକିଶୋର ଦାସଙ୍କ ସଂପର୍କରେ ଉଲ୍ଲେଖ କରିଛନ୍ତି । ସେହି ପ୍ରାସଙ୍ଗିକ ଅଂଶ :*

# ଓଡ଼ିଆଙ୍କ ମଧ୍ୟରେ ଏକମାତ୍ର ସିଭିଲିଆନ୍

**ଦେବେନ୍ଦ୍ର କୁମାର ଦାଶ**

୧୮୮୯ ମସିହା ଇଂରାଜୀ ନବବର୍ଷରେ କଟକ ସହରରେ ଗୋଟିଏ ସଭା ଅନୁଷ୍ଠିତ ହୋଇଥିଲା ଓ ଏହି ସଭାର ସିଦ୍ଧାନ୍ତ ଅନୁସାରେ ଯେଉଁ ଅନୁଷ୍ଠାନଟି ଜନ୍ମ ନେଇଥିଲା ତାର ନାମ ଥିଲା 'ଉତ୍କଳ ସମ୍ମିଳନୀ ସଭା' । ସେତେବେଳର ଓଡ଼ିଶା ଡିଭିଜନରେ ଶିକ୍ଷା, ସମ୍ପଦ ଓ ମର୍ଯ୍ୟାଦା– ସବୁଥିରେ ଓଡ଼ିଆମାନଙ୍କ ମଧ୍ୟରେ ଆଗରେ ଥିବା କରଣ ଜାତିର ଏହା ଥିଲା ଏକ ଅନୁଷ୍ଠାନ । କଟକ ସହରରୁ ପ୍ରକାଶିତ 'ଉତ୍କଳ ଦୀପିକା' ତ ଏହି ସଭା ବିଷୟରେ ଦୀର୍ଘ ସମ୍ବାଦ (୨୪।୨; ୧୨.୧.୧୮୮୯; ପୃ.୧୧-୧୨) ପ୍ରକାଶ କରିଥିଲା । ବାଲେଶ୍ୱରରୁ ପ୍ରକାଶିତ ହେଉଥିବା 'ବାଲେଶ୍ୱର ସମ୍ବାଦବାହିକା' ମଧ୍ୟ ଏଭଳି ଏକ ଅନୁଷ୍ଠାନ ସଂପର୍କରେ ଔତ୍ସୁକ୍ୟ ପ୍ରକାଶ କରି ଲେଖିଥିଲା :

"...ଗତ ପହିଲା ଦିନ କଟକ ନଗରସ୍ଥ କରଣମାନେ ଶ୍ରୀଯୁକ୍ତ ବାବୁ ନନ୍ଦକିଶୋର ଦାସଙ୍କ ଘରଠାରେ ଉପଗତ ହୋଇ ଉକ୍ତ ସଭା ସ୍ଥାପନ କରିଅଛନ୍ତି । ସେ ଦିନର ସଭାରେ ବାବୁ ଗଣେଶ୍ୱର ଦାସ ସଭାପତିଙ୍କ ଆସନ ଗ୍ରହଣ କରିଥିଲେ । ସଭାର ଉଦ୍ଦେଶ୍ୟ ଏହି–

୧ମ, ମୋଫସଲରୁ ଯେଉଁ ଛାତ୍ରମାନେ କଟକ ନଗରସ୍ଥ ଉଚ୍ଚ ବିଦ୍ୟାଳୟମାନଙ୍କରେ ପଢ଼ିବା ନିମନ୍ତେ ଯିବେ ଏବଂ ଯାହାଙ୍କର କେହି ଅଭିଭାବକ କଟକରେ ନ ଥିବେ, ସେହିପରି ଛାତ୍ରଙ୍କର ତତ୍ତ୍ୱାବଧାରଣ କରିବା;

୨ୟ, ଅର୍ଥାଭାବ ବଶତଃ ଯେଉଁ ଛାତ୍ରମାନେ ପଢ଼ିବାକୁ ଅକ୍ଷମ, ସେମାନଙ୍କର ସାହାଯ୍ୟ କରିବା;

୩ୟ, ବିବାହାଦି କ୍ରିୟା ଘଟିତ ଅପରିମିତ ବ୍ୟୟର ନିବାରଣ ।

କିରୂପେ ଯେ ଉକ୍ତ ତିନି ବିଷୟର ପ୍ରତିକାର କରାଯାଇ ପାରିବ ତାହା ଅବଧାରଣ କରିବା ନିମନ୍ତେ ପୃଥକ୍ ପୃଥକ୍ ତିନୋଟି ସବ୍‌କମିଟୀ ଗଠିତ ହୋଇଅଛି । ଉତ୍କଳ-ସମ୍ମିଳନୀ-ସଭାର

ସ୍ଥାୟୀ ସଭାପତି ପଦରେ ନନ୍ଦକିଶୋର ବାବୁ, ସହକାରୀ ସଭାପତି ପଦରେ ବାବୁ ହରେକୃଷ୍ଣ ଦାସ ଏବଂ ସମ୍ପାଦକ ପଦରେ ବାବୁ ରାସବିହାରୀ ନାୟକ ନିଯୁକ୍ତ ହୋଇଅଛନ୍ତି ।

ଉକ୍ତ ସମ୍ମିଳନୀ ସଭା ସହିତ ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ସହାନୁଭୂତି ଅଛି ଓ ସଭାର ଉଦ୍ୟମକାରିମାନଙ୍କୁ ଧନ୍ୟବାଦ ଦେଉଅଛୁଁ । ଏ ସମ୍ବନ୍ଧରେ ଆମ୍ଭମାନଙ୍କ ମତ କ୍ରମେ କ୍ରମେ ପ୍ରକାଶ କରିବୁଁ । ଏତେବେଳେ ଏତିକିମାତ୍ର ବୋଲୁଅଛୁଁ ଯେ, ଏଥିନିମନ୍ତେ ଓଡ଼ିଶାର ତିନି ଜିଲାରୁ ସଭ୍ୟ ସଂଗ୍ରହ କରାଯାଉ ଓ ଗୋଟିଏ ପାଣ୍ଠି ସ୍ଥାପିତ ହେଉ ।" (୩୨।୩; ୧୭.୧.୧୮୮୯; ପୃ.୧୦)

ନନ୍ଦକିଶୋର ଦାସ ଥିଲେ ଓଡ଼ିଆମାନଙ୍କ ମଧ୍ୟରେ ଏକମାତ୍ର ସିଭିଲିଆନ । ତାଙ୍କରି ଉଦ୍ୟମରେ ଏହି 'ଉତ୍କଳ-ସମ୍ମିଳନୀ ସଭା' ପ୍ରତିଷ୍ଠିତ ହୋଇଥିବାରୁ ଏହା ହଠାତ୍ ଝାଉଁଳି ପଡ଼ି ନଥିଲା । ତିନି ମାସ ମଧ୍ୟରେ ତାହାର ଆଉ ଦୁଇଟି ଅଧିବେଶନ ଅନୁଷ୍ଠିତ ହୋଇଥିଲା । (ଉତ୍କଳ ଦୀପିକା ୨୪।୧୦; ୯.୩.୧୮୮୯ ଓ ୨୪।୧୨; ୨୩.୩.୧୮୮୯) ୧୮୯୪ ମସିହା ଏପ୍ରିଲ୍ ମାସରେ ନନ୍ଦକିଶୋର ଦାସଙ୍କ ଦେହାନ୍ତ ପର୍ଯ୍ୟନ୍ତ କରଣ ସମାଜର ଉନ୍ନତି ନିମନ୍ତେ 'ଉତ୍କଳ-ସମ୍ମିଳନୀ ସଭା' ନିରନ୍ତର କାର୍ଯ୍ୟ କରି ଆସିଥିଲା । ତେଣୁ ୧୮୮୯ରେ ସ୍ଥାପିତ 'ଉତ୍କଳ-ସମ୍ମିଳନୀ-ସଭା' ଯେ ଜାତିଆଣ ଅନୁଷ୍ଠାନ ଥିଲା ତଥା ବୃହତ୍ତର ଓଡ଼ିଶା ଗଠନ ଓ ବିକାଶ ତା'ର ଲକ୍ଷ୍ୟ ନଥିଲା– ଏହା ତାହାର କାର୍ଯ୍ୟାବଳୀରୁ ସ୍ପଷ୍ଟ ।

ଉତ୍କଳ ଗୌରବ ମଧୁସୂଦନଙ୍କର ନନ୍ଦକିଶୋର ଦାସଙ୍କ ସହ ସଂପର୍କ ଥିଲା ଘନିଷ୍ଠ । ନନ୍ଦକିଶୋରଙ୍କ ମୃତ୍ୟୁ ପରେ ମଧୁସୂଦନ 'A CALL' ଶୀର୍ଷକରେ ଯେଉଁ ଲେଖାଟି 'ଉତ୍କଳ ଦୀପିକା'ରେ (୨୯।୧୫; ୧୪.୪.୧୮୯୪) ଲେଖିଥିଲେ, ସେଥିରେ ଉଭୟଙ୍କ ମଧ୍ୟରେ ଥିବା ଗଭୀର ଭଲପାଇବା ଅଭିବ୍ୟକ୍ତ । ମଧୁସୂଦନଙ୍କ ଅନୁଜ ଗୋପାଳବଲ୍ଲଭଙ୍କର ଏହି 'ଉତ୍କଳ-ସମ୍ମିଳନୀ ସଭା' ସହ ସଂପୃକ୍ତି ଥିଲା । ମଧୁସୂଦନ ବ୍ୟକ୍ତିଗତ ଭାବରେ ଏହି ସଭା ସହ ଜଡ଼ିତ ନଥିଲେ ବି ଏହାର କାର୍ଯ୍ୟକଳାପ ସଂପର୍କରେ ସେ ଯେ ଅବହିତ ନଥିଲେ, ଏକଥା କୁହାଯାଇ ପାରିବ ନାହିଁ । ତେବେ ୧୯୦୩ ମସିହାରେ ସମଗ୍ର ଓଡ଼ିଶାର ଏକୀକରଣ ପାଇଁ ଯେଉଁ ଅନୁଷ୍ଠାନର ସେ ଶୁଭାରମ୍ଭ କଲେ, ତାହାର ନାମ 'ଉତ୍କଳ ସମ୍ମିଳନୀ' ବୋଲି ସେ କାହିଁକି ଦେଲେ– ଏହା ସହଜରେ ବୁଝି ହୁଏନାହିଁ । ଏହା ନନ୍ଦକିଶୋର ଦାସଙ୍କ ସ୍ମୃତି ପ୍ରତି ତାଙ୍କର ଶ୍ରଦ୍ଧା ନିବେଦନ ନା ଏହା ଏକ ଉଦ୍ଦେଶ୍ୟରହିତ ନାମକରଣ ?

□□□

*ଓଡ଼ିଶା ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟରେ ରାଜ୍ୟର ଶିକ୍ଷା ଓ ପ୍ରଶାସନର ବିଭିନ୍ନ ପଦପଦବୀରେ ଦକ୍ଷତାର ସହ କାର୍ଯ୍ୟକରି ଓଡ଼ିଆଙ୍କପାଇଁ ଏକ ଉଜ୍ଜ୍ୱଳ କୀର୍ତ୍ତିସ୍ତମ୍ଭ ରୂପେ ପ୍ରତିଭାତ ହୋଇଥିଲେ ରାୟବାହାଦୁର ନନ୍ଦକିଶୋର ଦାସ । 'ଉତ୍କଳଦୀପିକା' ପୃଷ୍ଠାରେ ପ୍ରକାଶିତ ତଥ୍ୟ, ସୂଚନା ଓ ବିବରଣୀ ଆଧାରରେ ଓଡ଼ିଶାର ସେହି ପ୍ରସିଦ୍ଧ ପୂର୍ବସୂରୀଙ୍କ ସଂପର୍କରେ ଏହି ତଥ୍ୟ ସମ୍ବଳିତ ଉପସ୍ଥାପନା :*

# ଓଡ଼ିଶାର କୀର୍ତ୍ତିସ୍ତମ୍ଭ

ଅସିତ ମହାନ୍ତି

"ଯେଉଁମାନେ କାହାକୁ ପ୍ରଶଂସା ନକରିବାକୁ ହିଁ ଜୀବନର ବ୍ରତ ବୋଲି ଗ୍ରହଣ କରନ୍ତି, ସେମାନଙ୍କ ଦୃଷ୍ଟିରେ ନନ୍ଦକିଶୋର ନିଃସନ୍ଦେହରେ ଜଣେ ଚତୁର ବ୍ୟକ୍ତି- ଜଣେ ସାଧାରଣ ବିଷୟାସକ୍ତ ସଂସାରୀ ବୋଲି ମନେ ହୋଇପାରନ୍ତି; ମାତ୍ର ନିରପେକ୍ଷ ଭାବରେ ବିଚାର କଲେ ସେ ଜଣେ ମହାନ୍ ବ୍ୟକ୍ତି । ଜଣେ 'ହିରୋ'- ଜଣେ 'ଓଡ଼ିଆ ହିରୋ' ।"

ରାୟବାହାଦୁର ନନ୍ଦକିଶୋର ଦାସଙ୍କ ମୃତ୍ୟୁରେ, 'AN ORIYA' ନାମରେ 'ଉତ୍କଳଦୀପିକା' (ଏପ୍ରିଲ୍୧୪, ୧୮୯୪)ରେ ଲେଖିଥିବା ଏକ ଇଂରାଜୀ ଲେଖାରେ ଏହା କହିଛନ୍ତି ମଧୁସୂଦନ ଦାସ ।

ଲେଖାଟିର ଶୀର୍ଷକ- ' A CALL' ବା 'ଏକ ଆହ୍ୱାନ' । ସେଥିରେ ମଧୁସୂଦନ ଓଡ଼ିଶାବାସୀଙ୍କୁ, ତରୁଣ ଓଡ଼ିଶାକୁ ଆହ୍ୱାନ ଦେଇ କହିଛନ୍ତି, "ସମାଜଟା କ'ଣ ? ବ୍ୟକ୍ତିମାନଙ୍କୁ ନେଇ ହିଁ ସମାଜ । ଯଦି ସେହି ସମାଜର ଜଣେ ସଦସ୍ୟ ମହାନ୍ ହୁଏ, ତେବେ ସେ କ'ଣ ସାରା ସମାଜକୁ ଆଲୋକିତ କରେନା ? ସେ କ'ଣ ତାହାରି ସେହି ବିଶେଷତ୍ୱ ବଳରେ ତା' ଦେଶ ପାଇଁ ଅନେକ କିଛି କରେ ନାହିଁ ? ସମୟର ବାଲୁକାରାଶିରେ ସେ କ'ଣ ତା'ର ପଦଚିହ୍ନ ଛାଡ଼ିଯାଏ ନାହିଁ- ତାହା ଓ ସେ ପାଇଥିବା ଖ୍ୟାତି ଓ ଗୌରବର ଗାଥା କ'ଣ ତା' ଦେଶବାସୀଙ୍କ ପାଇଁ ଅନୁସରଣୀୟ ନୁହେଁ ? ଏ ଦୃଷ୍ଟିରୁ ଆମେ ତାଙ୍କୁ (ନନ୍ଦକିଶୋରଙ୍କୁ) ହୁଏତ ଜଣେ ମହାନ୍ ବୀର, ଜଣେ ଦେଶସେବୀ, ଜଣେ ଯୋଦ୍ଧା, ଜଣେ ଧର୍ମସଂସ୍କାରକ ବା ଜଣେ ଦେବଦୂତ ଭାବରେ ପୂଜା ନକରିପାରୁ; ମାତ୍ର ଜଣେ ଦକ୍ଷ ପଦାଧିକାରୀ, ରାଜନୀତିର ଜଣେ ଶିକ୍ଷକ, ଖ୍ୟାତି ଓ ଗୌରବର ଜଣେ ପଥପ୍ରଦର୍ଶକ, ଦେଶର ଜଣେ ବିଶିଷ୍ଟ ନାଗରିକ ତଥା ଜଣେ ଉଚ୍ଚପଦାଧିଷ୍ଠିତ ବ୍ୟକ୍ତି ଭାବରେ ଅନ୍ତତଃ ତାଙ୍କୁ ଆମେ ଗ୍ରହଣ କରିପାରିବା । ତେବେ କ'ଣ ସେ ଆମର ଉପାସ୍ୟ ନୁହନ୍ତି, ଆମ ଚକ୍ଷୁ ସମକ୍ଷରେ ଏକ ମାର୍ବଲର ପ୍ରତିମୂର୍ତ୍ତି ନୁହନ୍ତି ?"

ନନ୍ଦକିଶୋର ଦାସଙ୍କ ମୃତ୍ୟୁର ମାତ୍ର ଦୁଇବର୍ଷ ପୂର୍ବରୁ, ୧୮୯୨ରେ ଫକୀରମୋହନ ସେନାପତି ଲେଖିଥିଲେ 'ଉତ୍କଳ ଭ୍ରମଣଂ' । ସେଥିରେ ମଧ୍ୟ ସେ ନନ୍ଦକିଶୋରଙ୍କୁ ଗଭୀର ଶ୍ରଦ୍ଧା ନିବେଦନ କରି ଠିକ୍ ଏଇ କଥା କହିଥିଲେ । ଫକୀରମୋହନଙ୍କ ଦୃଷ୍ଟିରେ ସେ କେବଳ ସର୍ବଗୁଣନିପୁଣ, ଜଣେ 'ସିଭିଲ୍ ସର୍ଭାଣ୍ଟ' ଓ 'ପଲଟିକାଲ୍ ଏଜେଣ୍ଟ' ନଥିଲେ; ସେ ଥିଲେ ଓଡ଼ିଶାର ଏକ କୀର୍ତ୍ତିସ୍ତମ୍ଭ । ଏକ 'ମନୁମେଣ୍ଟ' । ସେଥିପାଇଁ ଫକୀରମୋହନ ଲେଖିଥିଲେ,

"ହେ ନନ୍ଦକିଶୋର ସର୍ବ ଗୁଣରେ ନିପୁଣ
ଗାଇବାକୁ ତୁମ୍ଭ ଯଶ ନାହିଁ ମୋର ଗୁଣ ।

* * *

ସିଭିଲ୍ ସରବେଣ୍ଟ ଏଣ୍ଡ ପଲିଟି ଏଜେଣ୍ଟ
ଜୟ ଜୟ ଜୟ ଓଡ଼ିଶାର Monument" ।

ନନ୍ଦକିଶୋରଙ୍କ ପିତା ନରସିଂହ ଚରଣ ଦାସ ଥିଲେ ପୁରୀର ଡେପୁଟୀ କଲେକ୍ଟର । କଟକ ଓ ପୁରୀର ଡେପୁଟୀ କଲେକ୍ଟର ଭାବରେ ସେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କରି କନିଷ୍ଠ ପୁତ୍ର ଭାବରେ ୧୮୪୫ ମସିହା ଜୁନ ମାସ ୫ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ ନନ୍ଦକିଶୋର । ୧୮୬୪ ମସିହାରେ ଏନ୍ଟ୍ରାନ୍ସ ପାସ୍‌କରି, ୨୦ ବର୍ଷ ବୟସରେ ପୁରୀ କଲେକ୍ଟରଙ୍କ କଚେରୀରେ ଜଣେ କିରାଣି ଭାବରେ ସେ ଚାକିରି ଜୀବନ ଆରମ୍ଭ କରିଥିଲେ । କିନ୍ତୁ ୨୦ ଟଙ୍କା ଦରମାର ଜଣେ ମାମୁଲି କିରାଣିରୁ ନିଜର ମେଧା, ନିଷ୍ଠା ଓ ଦକ୍ଷତା ବଳରେ ସେ ଓଡ଼ିଶାର ସ୍କୁଲ୍ ସମୂହର ଜଏଣ୍ଟ ଇନସ୍ପେକ୍ଟର ଏବଂ ଡେପୁଟୀ କମିଶନର ହୋଇ ପାରିଥିଲେ । ସେଥିପାଇଁ ମଧୁସୂଦନ ଦାସ ତାଙ୍କର ସେହି ଇଂରାଜୀ ଲେଖାରେ ଓଡ଼ିଶାବାସୀଙ୍କୁ ଆହ୍ୱାନ ଦେଇ ଲେଖିଥିଲେ, "ଓଡ଼ିଶାର ଜଣେ ସନ୍ତାନ ପଲିଟିକାଲ୍ ଏଜେଣ୍ଟ ଓ ଡେପୁଟୀ କମିଶନର ପଦବୀରେ ଅଧିଷ୍ଠିତ ହେବା କ'ଣ ଓଡ଼ିଶାପାଇଁ ଏକ ମହାନ୍ ଗୌରବ ନୁହେଁ ? ଓଡ଼ିଆମାନେ ଗଧା, ମାନ୍ଦା, ମୂର୍ଖ ଓ ନିର୍ବୋଧ ବୋଲି କାଳ କାଳ ଧରି ଯେଉଁ ଅପବାଦ ରହିଆସିଛି, ସେ ହିଁ ନିଜର ତୀକ୍ଷ୍ଣ ମେଧା ଓ ଚାତୁର୍ଯ୍ୟ ବଳରେ ତାହାକୁ ମିଥ୍ୟା ପ୍ରମାଣିତ କରିଛନ୍ତି ।"

୧୮୭୧ରେ ନନ୍ଦକିଶୋର ହୋଇଥିଲେ ଡେପୁଟୀ କଲେକ୍ଟର । ୧୮୭୫ରେ ତାଙ୍କୁ ଓଡ଼ିଶାର ସ୍କୁଲ୍ ସମୂହର ଜଏଣ୍ଟ ଇନ୍‌ସ୍ପେକ୍ଟର ଦାୟିତ୍ୱ ଦିଆଯାଇଥିଲା । ପ୍ରାୟ ଦୁଇବର୍ଷ ପରେ ପୁଣି ସେହି ଡେପୁଟୀ କଲେକ୍ଟର ପଦକୁ ଫେରି ସେ ଘଟଣାକ୍ରମରେ ୧୮୭୮ରେ ଗଡ଼ଜାତର ଆସିଷ୍ଟାଣ୍ଟ୍ ସୁପରିଣ୍ଟେଣ୍ଡେଣ୍ଟ୍ ହୋଇଥିଲେ । ତାଙ୍କର କର୍ମଦକ୍ଷତା ଦୃଷ୍ଟିରୁ ବ୍ରିଟିଶ୍ ସରକାର ୧୮୯୦ରେ ତାଙ୍କୁ 'ରାୟବାହାଦୁର' ଉପାଧିରେ ଭୂଷିତ କରିଥିଲେ । ୧୮୯୧ରେ ଅନୁଗୁଳ ଓ କନ୍ଧମାଳ ଏକ ପୃଥକ ଜିଲ୍ଲାରେ ପରିଣତ ହେବାପରେ ସେ ହୋଇଥିଲେ ତାହାର ପ୍ରଥମ ମାଜିଷ୍ଟ୍ରେଟ୍ ଓ କଲେକ୍ଟର । ୧୮୯୨ରେ ତାଙ୍କୁ କେନ୍ଦୁଝରର ପଲିଟିକାଲ୍ ଏଜେଣ୍ଟ ପଦବୀରେ

ଅବସ୍ଥାପିତ କରାଯାଇଥିଲା । ଦେଢ଼ ବର୍ଷ ପରେ ଅନୁଗୁଳ ଫେରି ସେ ହୋଇଥିଲେ ଡେପୁଟୀ କମିଶନର । ଏହିସବୁ ପଦ, ପଦବୀ, ଦାୟିତ୍ୱ ସେତେବେଳେ କିଛି କମ୍ ଖ୍ୟାତି ଓ ପ୍ରତିପତ୍ତିର ବିଷୟ ନଥିଲା । ମାତ୍ର ଏତେ ସବୁ ସତ୍ତ୍ୱେ ତାଙ୍କଠାରେ ପଦପଦବୀର ଅହଂକାର ପ୍ରକାଶ ପାଇନଥିଲା । ସେ ସମସ୍ତଙ୍କୁ ଭଲପାଉଥିଲେ ଏବଂ ସମସ୍ତେ ତାଙ୍କୁ ଭଲ ପାଉଥିଲେ ।

ନିଜର ମେଧା, ନିଷ୍ଠା ଓ ଅଧ୍ୟବସାୟ ବଳରେ ନନ୍ଦକିଶୋର କେବଳ ଯେ ସାମାନ୍ୟ କିରାଣିରୁ ଡେପୁଟୀ କମିଶନର ହୋଇ, ମଧୁସୂଦନ ଦାସଙ୍କ ଭାଷାରେ ଓଡ଼ିଶାବାସୀଙ୍କ ପାଇଁ ପଥପ୍ରଦର୍ଶକ ଭାବରେ ସମୟର ବାଲୁକାବକ୍ଷରେ ତାଙ୍କର ପଦଚିହ୍ନ ଛାଡ଼ି ଯାଇଥିଲେ ତାହା ନୁହେଁ; ଓଡ଼ିଶାର ଶିକ୍ଷା ନିରୀକ୍ଷକ ଭାବରେ ବହୁ ଗଠନମୂଳକ କାର୍ଯ୍ୟ ମଧ୍ୟ କରିଥିଲେ । ସେ ସବୁର ସ୍ୱାକ୍ଷର 'ଉତ୍କଳଦୀପିକା'ର ପୃଷ୍ଠାରେ ଲିପିବଦ୍ଧ ଅଛି । ଆଜିର ସମୟରେ ହୁଏତ ସେସବୁର ପ୍ରାସଙ୍ଗିକତା ଅନୁଭୂତ ହେଉ ନାହିଁ; ମାତ୍ର ସେତେବେଳେ ସେ ଯେ ଥିଲେ ଜଣେ ସର୍ବଅଗ୍ରଣୀ ଓଡ଼ିଆ ଏବଂ ଓଡ଼ିଶାବାସୀଙ୍କର ଗର୍ବ ଓ ଗୌରବର କାରଣ ହୋଇଥିଲେ, ତାହାକୁ ଅସ୍ୱୀକାର କଲେ ଇତିହାସର ଅପଳାପ ହେବ ।

୧୮୬୪ରେ ଏଣ୍ଟ୍ରାନ୍ସ ପାସ୍ କରି, ୨୦ ବର୍ଷ ବୟସରେ ମାସିକ ୨୦ ଟଙ୍କାରେ କିରାଣି ଚାକିରି ଆରମ୍ଭ କରିବାର ମାତ୍ର ସାତ ବର୍ଷ ପରେ ନନ୍ଦକିଶୋର ହୋଇଥିଲେ ଡେପୁଟୀ କଲେକ୍ଟର । 'ଉତ୍କଳଦୀପିକା'ର ଭାଗ-୬, ସଂଖ୍ୟା-୩୯, ଅକ୍ଟୋବର ୭, ୧୮୭୧ରେ ଲିପିବଦ୍ଧ ଅଛି ସେ ସଂପର୍କିତ ବିବରଣୀ । 'ଓଡ଼ିଆ ଡେପୁଟୀ କଲେକ୍ଟର' ଶୀର୍ଷକ ସେହି ବିବରଣୀରେ କୁହାଯାଇଛି, "ଓଡ଼ିଶା ଲୋକଙ୍କର କପାଳ ଏତେ ଦିନକେ ଫିଟିଲା ପରି ଜଣାଯାଉଅଛି । ପୂର୍ବକାଳରେ କେତେଗୁଡ଼ିଏ ଓଡ଼ିଆ ଡେପୁଟୀ କଲେକ୍ଟର ହୋଇ ଉତ୍ତମ ରୂପେ ସରକାରୀ କର୍ମ ଚଳାଇ ପ୍ରଶଂସାଭାଜନ ହୋଇଥିଲେ, ମାତ୍ର ଏଣିକି ପ୍ରାୟ ଦଶବର୍ଷ କି ଅଧିକ ହେବ ଓଡ଼ିଆଙ୍କୁ କେହି ପଚାରୁ ନଥିଲେ । * * * ସଂପ୍ରତି ଶ୍ରୀଯୁକ୍ତ ରେବନସାସାହେବ କମିଶ୍ନରଙ୍କ ଅନୁଗ୍ରହ ଓ ଉଦ୍‌ଯୋଗରୁ ଓଡ଼ିଆମାନେ ପୁନର୍ବାର ଉଚ୍ଚପଦ ପାଇବାର ଆରମ୍ଭ ହୋଇଅଛି । ଆମ୍ଭେମାନେ ଏଥିପୂର୍ବ * * * ବାବୁ ନନ୍ଦକିଶୋର ଦାସ ଏ ପଦ ପାଇଁ ମନୋନୀତ ହୋଇଅଛନ୍ତି ବୋଲି ଲେଖିଥିଲୁଁ । ଭରସାକରୁ ଶୀଘ୍ର ଗବର୍ଣ୍ଣମେଣ୍ଟ ଏହାଙ୍କୁ ନିଯୋଗ କରିବେ । * * * କେବଳ ଓଡ଼ିଆଙ୍କୁ କର୍ମଦେବାରେ ଆମ୍ଭେମାନେ ଯେତେ ସନ୍ତୁଷ୍ଟ ଅଛୁଁ ଓଡ଼ିଆଙ୍କ ମଧ୍ୟରୁ ଉପଯୁକ୍ତ ବ୍ୟକ୍ତିଙ୍କୁ ବାଛି କର୍ମ ଦେବାରେ ତଦପେକ୍ଷା ଅଧିକ ଆନନ୍ଦିତ ଅଛୁଁ ।"

ଡେପୁଟୀ କଲେକ୍ଟର ଦାୟିତ୍ୱ ସଫଳତାର ସହ ନିର୍ବାହ କରିବା ପରେ, ୧୮୭୫ ମସିହାରେ ନନ୍ଦକିଶୋର ଦାସ ଓଡ଼ିଶାର ସ୍କୁଲ୍ ସମୂହର ପ୍ରଥମ ଓଡ଼ିଆ ଜଏଣ୍ଟ ଇନ୍‌ସ୍ପେକ୍ଟର ଭାବରେ ନିଯୁକ୍ତି ପାଇଲେ । ତେବେ ସେତେବେଳର ପରିସ୍ଥିତି ଥିଲା ଭିନ୍ନ । ପୁରୁଷାନୁକ୍ରମେ ଓଡ଼ିଶାରେ ବସବାସ କରିଆସୁଥିବା ବଙ୍ଗାଳୀ କାୟସ୍ଥମାନେ ଓଡ଼ିଆଙ୍କୁ ହେୟ ଦୃଷ୍ଟିରେ ଦେଖୁଥିଲେ । ଓଡ଼ିଶାରେ ଥାଇ

ଏବଂ ଓଡ଼ିଶାର ଶିକ୍ଷାବିଭାଗରେ ଚାକରି କରି ମଧ୍ୟ ସେମାନେ ଓଡ଼ିଆ ଭାଷା ଶିଖିବାକୁ ଚାହୁଁ ନଥିଲେ । ସେଥିପାଇଁ କମିଶନର ସାହେବ ଯେତେବେଳେ ସେ ବାବଦରେ ଏକ ରିପୋର୍ଟ ମଗାଇଲେ, ସେମାନେ ଖୁବ୍ କ୍ଷୁବ୍ଧ ହେଲେ । 'ଓଡ଼ିଶାରେ ଓଡ଼ିଆମାନଙ୍କୁ ହତାଦର' ଶୀର୍ଷକରେ 'ଉତ୍କଳଦୀପିକା'ରେ ପ୍ରକାଶିତ ଏକ ପ୍ରେରିତପତ୍ର (ଭାଗ-୮, ସଂଖ୍ୟା-୧୨, ମାର୍ଚ୍ଚ୧୨, ୧୮୭୩) ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । ସେଥିରେ 'ଜଣେ ଅନୁଗତ ଓଡ଼ିଆ' ନାମରେ ପତ୍ରପ୍ରେରକ ଲେଖିଛନ୍ତି, "ଆଜିକାଲି ପୁରୁଷୋତ୍ତମରେ କେତେଜଣ ବିଦେଶୀ ବଙ୍ଗାଳୀ ଆସି ପଡ଼ିଅଛନ୍ତି । ତାଙ୍କ ଦାଉ ଆଉ ସହି ହେଉନାହିଁ । ସେମାନେ ଉତ୍କଳୀୟଙ୍କୁ ଦୁଇ ଆଖିରେ ଦେଖିପାରୁ ନାହାନ୍ତି । ପର୍ବରେ ଯେଉଁ ଉତ୍କଳୀୟ ଓ ବିଦେଶୀ ବଙ୍ଗାଳୀଙ୍କ ମଧ୍ୟରେ (ଫକୀର ମୋହନ କଥାରେ କହିଲେ) ଦଳାଦଳୀ ଉପସ୍ଥିତ ହୋଇଥିଲା ତାହା ଏକପ୍ରକାର ଉତ୍ତମରୂପେ କର୍କୁଡ଼ ସାହେବଙ୍କ ଦ୍ୱାରା ନିର୍ବାପିତ ହୋଇଥିଲା କିନ୍ତୁ ଭସ୍ମଗୁଣ୍ଡ ଅଗ୍ନିକଣାପ୍ରାୟ ବଙ୍ଗାଳୀଙ୍କ ମନରୁ ଜିଘାଂସା ନିଃଶେଷିତ ହୋଇ ନଥିଲା । ବର୍ତ୍ତମାନ କମିଶ୍ନର ସାହେବ ଏକ କୈଫିୟତ ତଲବ କରିଅଛନ୍ତି ଯେ ଉତ୍କଳଦେଶରେ ଯେତେ ଶିକ୍ଷାକର୍ମଚାରୀ ଅଛନ୍ତି ତନ୍ମଧ୍ୟରେ କେତେଜଣ ଓଡ଼ିଆ ଓ କେତେଜଣ ବଙ୍ଗାଳୀ, ସମସ୍ତେ ଉତ୍କଳଭାଷା ଉତ୍ତମରୂପେ ଜାଣିଛନ୍ତି କି ନାହିଁ, ଇତ୍ୟାଦି । ଏଥିରେ ଏଠାରେ ଯେତେ ବଙ୍ଗାଳୀ ଓଡ଼ିଆ ଉତ୍ତମରୂପେ ନଜାଣନ୍ତି ସମସ୍ତେ କ୍ରୋଧୋକ୍ଷିପ୍ତ ହୋଇ ଅଛନ୍ତି । 'କମିଶ୍ନରଟା ନିତାନ୍ତ ଉଡ଼େ ହୟେଛେ ।' ଇତ୍ୟାକାର ମନୋଭାବ ବ୍ୟକ୍ତ କରୁଅଛନ୍ତି ଓ ପଥରେ କି କୌଣସି ଗୃହସ୍ଥିତ ସମାଜରେ ଉତ୍କଳୀୟଙ୍କୁ ନିନ୍ଦା କରିବାରେ ତ୍ରୁଟି କରୁନାହାନ୍ତି । କଟକରେ ମଧ୍ୟ କେତେକ ପରଶ୍ରୀକାତର ବଙ୍ଗାଳୀ ନିନ୍ଦାପରତନ୍ତ୍ର ହୋଇ ଏଡୁକେଶନ ଗେଜେଟରେ ଆପଣାର ମନକଥା ଅଚିତ୍ ଉଦ୍‌ଗାର କରି ପକାଇଅଛନ୍ତି ।"

ସେତେବେଳେ ବଙ୍ଗାଳୀମାନଙ୍କର ଏହି ଓଡ଼ିଆ ବିଦ୍ୱେଷର ପରିପ୍ରକାଶ ଯେ ନନ୍ଦକିଶୋର ଦାସଙ୍କ କ୍ଷେତ୍ରରେ ଘଟିଥିଲା, ତାହାର ନିଦର୍ଶନ ମଧ୍ୟ ଉକ୍ତ ପତ୍ରରେ ଅଛି । ପୁରୀ ଜିଲ୍ଲାରେ ଜଣେ ଓଡ଼ିଆ ଡେପୁଟୀ କଲେକ୍ଟର ଓ ଜଣେ ଡେପୁଟୀ ଇନ୍‌ସ୍ପେକ୍ଟର ଥିବାରୁ ବଙ୍ଗାଳୀମାନେ ଦ୍ୱେଷ ପ୍ରକଟ କରି କହୁଥିବା କଥାର ଉଲ୍ଲେଖ କରି ପତ୍ରପ୍ରେରକ ଲେଖିଛନ୍ତି, "ନନ୍ଦକିଶୋର ଏଖାନକାର ଛାତ୍ର ଯେ ଆବାର ନୋକେଲ୍ କମିଟିର ସେକ୍ରେଟାରୀ ହଇୟାଛେ । ବିଚାର ଦେଖ ।"

ଶିକ୍ଷାବିଭାଗୀୟ କର୍ମଚାରୀ ଥିବା ବଙ୍ଗାଳୀମାନଙ୍କର ଏପରି ବିଦ୍ୱେଷ ସାଙ୍ଗକୁ ଓଡ଼ିଆ ପୁସ୍ତକର ଅଭାବ ମଧ୍ୟ ସେତେବେଳେ ଲାଗି ରହିଥିଲା । ତା' ସାଙ୍ଗକୁ ଯେଉଁସବୁ ପୁସ୍ତକ ଓଡ଼ିଆ ଭାଷାରେ ପ୍ରକାଶ ପାଉଥିଲା, ସେସବୁରେ ବହୁ ତ୍ରୁଟି ବିଚ୍ୟୁତି ରହୁଥିଲା । 'ଉତ୍କଳଦୀପିକା'ର ପୃଷ୍ଠାଗୁଡ଼ିକରେ ଏ ବାବଦରେ ବହୁ ପ୍ରମାଣ ମହଜୁଦ ଅଛି । କିନ୍ତୁ କମିଶନର ଚାହୁଁଥିଲେ ଓଡ଼ିଆ ଭାଷା ଓ ଓଡ଼ିଆ ଶିକ୍ଷାର ବିକାଶ ଘଟୁ । ନନ୍ଦକିଶୋର ଦାସଙ୍କୁ ସେ ଜଣେ ବିଶିଷ୍ଟ, ଶିକ୍ଷିତ ଓ ଓଡ଼ିଆପ୍ରେମୀ ବ୍ୟକ୍ତି ବୋଲି ଜାଣିଥିଲେ । ଭାଗ-୮, ସଂଖ୍ୟା-୨୨, ମେ-୩୧, ୧୮୭୩ର 'ଉତ୍କଳଦୀପିକା'ରୁ ଏ

ସଂପର୍କରେ ଗୋଟିଏ ରୋଚକ ଦୃଷ୍ଟାନ୍ତ ମିଳେ । ଅନୁଷ୍ଠାନଟି ଥିଲା ଏକ ପୁରସ୍କାର ବିତରଣୀ ସଭା । ପୁରୀର ଇଂରାଜୀ, ସଂସ୍କୃତ ଓ ଉତ୍କଳ ବିଦ୍ୟାଳୟର ବାଳକମାନଙ୍କୁ ସେହି ସଭାରେ ପୁରସ୍କାର ବିତରଣ କରିବାପାଇଁ ଅତିଥି ହୋଇ ଆସିଥିଲେ କମିଶନର ସାହେବ ଏବଂ ପଶ୍ଚିମ ବିଭାଗର ସ୍କୁଲ୍ ଇନ୍‌ସ୍ପେକ୍ଟର । ସ୍କୁଲ୍‌ର ହେଡ୍‌ମାଷ୍ଟର ଏବଂ ଡେପୁଟୀ କଲେକ୍ଟର ଭାବରେ ନନ୍ଦକିଶୋର ଦାସ ମଧ୍ୟ ସଭାରେ ଉପସ୍ଥିତ ଥିଲେ । କମିଶନର ସାହେବ ନନ୍ଦକିଶୋରଙ୍କୁ ଓ ହେଡ୍‌ମାଷ୍ଟରଙ୍କୁ ଓଡ଼ିଆରେ କିଛି କହିବାକୁ ଅନୁରୋଧ କରିଥିଲେ ଏବଂ ଦୁହେଁ ଓଡ଼ିଆରେ ସେହି ସଭାରେ ଉଦ୍‌ବୋଧନ ଦେଇଥିଲେ । ଏଥିରେ କମିଶନର ଖୁବ୍ ଖୁସି ହୋଇଥିଲେ ।

ଇତିମଧ୍ୟରେ ଦେଶୀୟ ସିଭିଲ୍ ସର୍ଭିସ୍‌ର ପରୀକ୍ଷାଫଳ ପ୍ରକାଶ ପାଇଲା ଏବଂ ନନ୍ଦକିଶୋର ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । 'ଉତ୍କଳଦୀପିକା'ର ଭାଗ-୯, ସଂଖ୍ୟା ୩୮, ସେପ୍ଟେମ୍ବର ୧୯, ୧୮୭୪ ସଂଖ୍ୟାରେ ତାହାର ବିବରଣୀ ପ୍ରକାଶପାଇଛି । ତଦନୁଯାୟୀ, ଉତ୍ତୀର୍ଣ୍ଣ ହୋଇଥିବା ମୋଟ୨୦୦ ଜଣଙ୍କ ମଧ୍ୟରୁ ୩୮ ଜଣ ପ୍ରଥମ ଶ୍ରେଣୀରେ, ୩୮ ଜଣ ଦ୍ୱିତୀୟ ଶ୍ରେଣୀରେ ଏବଂ ବାକି ୧୨୪ ଜଣ ତୃତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେମାନଙ୍କ ମଧ୍ୟରେ ଦୁଇଜଣ ଆସାମର ଥିବାରୁ ସେମାନଙ୍କୁ ଆସାମପାଇଁ ରଖି ବାକି ୧୯୮ ଜଣଙ୍କୁ ସରକାର ବଙ୍ଗଳାର କମିଶନରଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । ଓଡ଼ିଶା ବିଭାଗରେ ଥିଲେ ପ୍ରଥମ ଶ୍ରେଣୀର ଦୁଇଜଣ, ଦ୍ୱିତୀୟ ଶ୍ରେଣୀର ଦୁଇଜଣ ଏବଂ ତୃତୀୟ ଶ୍ରେଣୀରେ ସାତ ଜଣ । ନନ୍ଦକିଶୋର ଥିଲେ ପ୍ରଥମ ଶ୍ରେଣୀର ଦୁଇଜଣଙ୍କ ମଧ୍ୟରୁ ଜଣେ ।

ସେତେବେଳେ ଓଡ଼ିଶାର ସ୍କୁଲ୍ ସମୂହର ଇନ୍‌ସ୍ପେକ୍ଟର ପଦରେ ଜଣେ ଓଡ଼ିଆଙ୍କୁ ନିଯୁକ୍ତ କରିବା ନେଇ ଜନମତ ପ୍ରକାଶ ପାଉଥିଲା । ଫଳରେ ଭାଗ-୯, ସଂଖ୍ୟା-୪୮, ଡିସେମ୍ବର-୫, ୧୮୨୪ 'ଉତ୍କଳଦୀପିକା' ପୃଷ୍ଠାରେ ତାହାର ପ୍ରତିଫଳନ ଘଟିଥିଲା । 'ଓଡ଼ିଶାର ସ୍କୁଲ୍ ଇନ୍‌ସ୍ପେକ୍ଟର' ଶୀର୍ଷକରେ 'ଉତ୍କଳଦୀପିକା' ଲେଖିଥିଲେ, "ଓଡ଼ିଶାର ବିଦ୍ୟାଳୟ ସମୂହର ଇନ୍‌ସ୍ପେକ୍ଟର ପଦରେ ଜଣେ ଓଡ଼ିୟାଙ୍କୁ ନିଯୁକ୍ତ କରିବାର ଗବର୍ଣ୍ଣମେଣ୍ଟଙ୍କ ଇଚ୍ଛା ଥିବା ବିଷୟ ଯେ ପୂର୍ବେ ଲେଖାଯାଇଥିଲା, ତାହା କୃତକାର୍ଯ୍ୟ ହେବାର ଆଶା ଦେଖାଯାଏ । ଲେଫ୍‌ଟନେଣ୍ଟ ଗବର୍ଣ୍ଣର ସାହେବ ଏ ପ୍ରଦେଶରେ ବିରାଜଥିବା ସମୟରେ ସେ ପଦ ବାବୁ ଜଗନ୍ମୋହନ ରାୟଙ୍କୁ ଯାଚିଲେ । ବାବୁ ମହାଶୟ ଅସମ୍ମତ ହେବାରୁ ବାବୁ ନନ୍ଦକିଶୋର ଦାସ ପୁରୀର ଡେପୁଟୀ କଲେକ୍ଟରଙ୍କୁ ମନୋନୀତ କଲେ । ସେ କର୍ମର ମାସିକ ବେତନ ଟ.୫୦୦ରୁ ଟ.୧୫୦୦ ପର୍ଯ୍ୟନ୍ତ । ସାହେବ ମହୋଦୟଙ୍କ ଏ ପ୍ରଦେଶକୁ ଆସିବାର ପ୍ରଥମ ଫଳ ଏହି ଅଟେ । ସୁଖର କଥା ।"

ତେବେ ସେହି ପଦରେ ନନ୍ଦକିଶୋର ଦାସଙ୍କ ନିଯୁକ୍ତି ନେଇ ସେତେବେଳେ କେତେକ ଭିନ୍ନ ମତ ପୋଷଣ କରିଥିଲେ । ସେମାନଙ୍କର ମତ ଥିଲା, ଯେହେତୁ ଇନ୍‌ସ୍ପେକ୍ଟରୀ ଶିକ୍ଷା ବିଭାଗର ଏକ ପ୍ରଧାନ କର୍ମ, ସେଥିରେ ଜଣେ ବିଦ୍ୱାନ ବ୍ୟକ୍ତି ଅବସ୍ଥାପିତ ହୁଅନ୍ତୁ । ଉଚ୍ଚ

ଉପାଧିଧାରୀ ଭାବରେ ମଧୁସୂଦନ ଦାସଙ୍କ ନାମ ମଧ୍ୟ ସେଥିପାଇଁ ଉଠିଥିଲା । ମାତ୍ର ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କର ମତ ଥିଲା, ଯେହେତୁ ତାହା ଶିକ୍ଷା ବିଭାଗର ଏକ 'ହାକିମୀ କର୍ମ' ତେଣୁ ସେଥିରେ ବିଦ୍ୟା ଅପେକ୍ଷା କାର୍ଯ୍ୟଦକ୍ଷତା ଅଧିକ ଆବଶ୍ୟକ । ସେଥିପାଇଁ ନନ୍ଦକିଶୋର ଦାସ ହିଁ ସଂପୂର୍ଣ୍ଣ ଉପଯୁକ୍ତ । (ଭାଗ-୯, ସଂଖ୍ୟା-୪, ଅକ୍ଟୋବର ୩୦, ୧୯୭୪) ଏଣୁ ସେ ସଂପର୍କରେ ସେହି ସଂଖ୍ୟାରେ 'ଉତ୍କଳଦୀପିକା' ନିଜର ମନ୍ତବ୍ୟ ଦେଇ ଲେଖିଥିଲେ, "ଏ ବିବେଚନାରେ ନନ୍ଦକିଶୋର ବାବୁ ସେ କର୍ମର ସଂପୂର୍ଣ୍ଣ ରୂପେ ଉପଯୁକ୍ତ ଅଟନ୍ତି । ବର୍ତ୍ତମାନ ତାଙ୍କର ଯୌବନାବସ୍ଥା । ତାଙ୍କଠାରେ ଯେ କିଛି ଅଭାବ ଥିବ ତାହା ସେ ଅନାୟାସେ ପୂରଣ କରି ପାରନ୍ତି । ଅତଏବ ତାଙ୍କୁ ନିଯୁକ୍ତ କରିବାରେ କେହି ଅସନ୍ତୁଷ୍ଟ ହେବାର କିଛି କାରଣ ଦେଖାଯାଉ ନାହିଁ । କମିଶ୍ନର ସାହେବ ଲୋକ ମନୋନୀତ କରିବାରେ ଯେପରି ହୁଡ଼ନ୍ତି ସେ ଯେ ଏ ସ୍ଥଳେ ସେପରି ନହୁଡ଼ି ନନ୍ଦକିଶୋର ବାବୁଙ୍କ ପାଇଁ ଅନୁରୋଧ କରିଅଛନ୍ତି ଏହା ସୌଭାଗ୍ୟର ବିଷୟ ଅଟଇ । ବର୍ତ୍ତମାନ ପ୍ରଶଂସିତ ବାବୁ ସେ ପଦରେ ଏକଟିଂ ସ୍ୱରୂପ ରହିବେ ଓ ତହିଁର ପୂର୍ଣ୍ଣ ବେତନ ନପାଇ ତାଙ୍କ ଅସଲ କର୍ମର ବେତନ ଓ ଏକଟିଂ ଭତ୍ତା ଖର୍ଚ୍ଚ ପାଇବେ । ଆମ୍ଭେମାନେ ମନାସୁ ଅଛୁଁ ଯେ ସେ ସେକର୍ମ ସକାଶେ ଆପଣାର ଉପଯୁକ୍ତତାର ପରିଚୟ ଦେଇ ଶୀଘ୍ର ସେଥିରେ ବାହାଲ ହେଉନ୍ତୁ ଓ ଓଡ଼ିଶାର ମାନରକ୍ଷା କରନ୍ତୁ ।"

ଅବଶ୍ୟ ମାନରକ୍ଷା କରିଥିଲେ ନନ୍ଦକିଶୋର । 'ଏକଟିଂ' ବା କାର୍ଯ୍ୟକାରୀ ବା ଭାରପ୍ରାପ୍ତ ହେଲେ ମଧ୍ୟ ଓଡ଼ିଶାର ସ୍କୁଲ୍ ସମୂହର ଜଏଣ୍ଟ ଇନ୍‌ସ୍ପେକ୍‌ଟର ପଦରେ ଦକ୍ଷତାର ସହ କାର୍ଯ୍ୟ କରି ବହୁ ଗଠନମୂଳକ ପଦକ୍ଷେପ ନେଇଥିଲେ । ୧୮୭୫ ମସିହା ମେ ମାସ ୪ ତାରିଖ ଦିନ ସେ ପ୍ରକାଶ କରିଥିବା ଏକ ବିଜ୍ଞାପନ ଏହାର ଏକ କ୍ଷୁଦ୍ର ନିଦର୍ଶନ ।

'ଉତ୍କଳଦୀପିକା'ର ଭାଗ-୧୦, ସଂଖ୍ୟା-୧୯, ମେ ୮, ୧୮୭୫ରେ ପ୍ରକାଶିତ ସେହି ବିଜ୍ଞାପନଟି ଉଦ୍ଦିଷ୍ଟ ଥିଲା 'ଗ୍ରନ୍ଥକର୍ତ୍ତାମାନଙ୍କ ପ୍ରତି' । ଓଡ଼ିଆ ପୁସ୍ତକର ବିକ୍ରୟ ଓ ବିତରଣରେ ହେଉଥିବା ଅସୁବିଧା ଦୂର କରିବାପାଇଁ ତାହା ଜାରି କରାଯାଇ ଥିଲା । ନନ୍ଦକିଶୋର ଦାସ ସେଥିରେ ଦର୍ଶାଇଥିଲେ, "ଏ ପ୍ରଦେଶରେ ଯେତେ ଓଡ଼ିଆ ପୁସ୍ତକ ଛାପା ହେଉଅଛି, ତାହା କିଣିବାରେ ବଡ଼ ଅସୁବିଧା ହେଉଅଛି । ଯେବେ ଗ୍ରନ୍ଥକର୍ତ୍ତାମାନେ ସମ୍ମତ ହୋଇ କଟକ, ପୁରୀ ଓ ବାଲେଶ୍ୱରରେ ଜଣେ ଲେଖାଏଁ ଏଜେଣ୍ଟ ନିଯୁକ୍ତ କରନ୍ତି, ତେବେ ସେମାନଙ୍କର (ଗ୍ରନ୍ଥକର୍ତ୍ତାମାନଙ୍କର) ପୁସ୍ତକ ଶୀଘ୍ରଶୀଘ୍ର ବିକ୍ରୀ ହେବ ଓ ସାଧାରଣ ମଧ୍ୟ ଅକ୍ଲେଶରେ ସବୁ ପୁସ୍ତକ ପାଇପାରିବେ ।" ଉଲ୍ଲେଖନୀୟ ଯେ ଆବଶ୍ୟକ ହେଲେ ଏ ବାବଦରେ ସାହାଯ୍ୟ କରିବାକୁ ସରକାରଙ୍କ ପକ୍ଷରୁ ସେ ଇଚ୍ଛୁକ ଅଛନ୍ତି ବୋଲି ମଧ୍ୟ ନନ୍ଦକିଶୋର ସେହି ବିଜ୍ଞାପନରେ ଉଲ୍ଲେଖ କରିଥିଲେ ।

ଓଡ଼ିଶାର ବିଦ୍ୟାଳୟ ସମୂହର ଜଏଣ୍ଟ ଇନ୍‌ସ୍ପେକ୍ଟର ଭାବରେ, କେବଳ ଯେ ଓଡ଼ିଆ ପୁସ୍ତକର ବିକ୍ରୟ ଓ ବିତରଣରେ ହେଉଥିବା ଅସୁବିଧାଗୁଡ଼ିକୁ ଦୂର କରିବାକୁ ନନ୍ଦକିଶୋର ଉଦ୍ୟମ କରିଥିଲେ ତାହା ନୁହେଁ; ଓଡ଼ିଆ ଭାଷାରେ ଭଲ ବ୍ୟାକରଣ ପୁସ୍ତକର ଅଭାବ ଲକ୍ଷ୍ୟ କରି ସେ ସମସ୍ୟାର ସମାଧାନପାଇଁ ମଧ୍ୟ ସେ ପଦକ୍ଷେପ ନେଇଥିଲେ । 'ଉତ୍କଳ ଭାଷା ବ୍ୟାକରଣପାଇଁ ପୁରସ୍କାର' ଶୀର୍ଷକ ବିଜ୍ଞାପନ (ଉତ୍କଳଦୀପିକା, ଭାଗ-୧୧, ସଂଖ୍ୟା-୧୫, ଏପ୍ରିଲ୍ ୮, ୧୮୭୬) ଏହାର ପ୍ରମାଣ । ସେହି ବିଜ୍ଞାପନରେ ନନ୍ଦକିଶୋର ଘୋଷଣା କରିଥିଲେ, "ଖଣ୍ଡେ ଉତ୍କୃଷ୍ଟ ଉତ୍କଳ ଭାଷା ବ୍ୟାକରଣ ନିମନ୍ତେ ୧୦୦ ଟଙ୍କା ପୁରସ୍କାର ଦିଆଯିବ । ସନ ୧୮୭୬ ଡିସେମ୍ବର ମାସ ତା୩୧ରିଖ କିମ୍ବା ତହିଁ ପୂର୍ବେ ପୁସ୍ତକ କମିଶ୍ନର ସାହେବଙ୍କ ମଞ୍ଜୁରୀକାରଣ ଦିଆଯିବ । ଯାହାଙ୍କ ପୁସ୍ତକ ସାହେବଙ୍କ ମନୋନୀତ ହେବ ତାଙ୍କୁ ପୁରସ୍କାର ଦିଆଯିବ ।"

ଓଡ଼ିଆ ପାଠ୍ୟପୁସ୍ତକର ବିକ୍ରୟ ଓ ବିତରଣ ଏବଂ ଓଡ଼ିଆ ଭାଷାର ଏକ ଉତ୍କୃଷ୍ଟ ବ୍ୟାକରଣ ପ୍ରସ୍ତୁତି ନିମନ୍ତେ ପଦକ୍ଷେପ ନେବା ପରି ଓଡ଼ିଶାର ଛାତ୍ରମାନେ ଅଧିକ ସଂଖ୍ୟାରେ ପରୀକ୍ଷା ଦିଅନ୍ତୁ ଏବଂ ପରୀକ୍ଷାରେ ଭଲ ଫଳ କରନ୍ତୁ ବୋଲି ମଧ୍ୟ ନନ୍ଦକିଶୋର ଆନ୍ତରିକ ଭାବରେ ଚାହୁଁଥିଲେ । ସେଥିପାଇଁ ଆବଶ୍ୟକ ପଦକ୍ଷେପ ନେବା ସହିତ ଭଲ ଫଳ ନହେଲେ ନିଜର ଅସନ୍ତୋଷ ବ୍ୟକ୍ତ କରୁଥିଲେ । ୧୮୭୬ ମସିହାର ବିଶ୍ୱବିଦ୍ୟାଳୟ ପରୀକ୍ଷାଫଳ ଏହାର ଦୃଷ୍ଟାନ୍ତ । ଏହାର ବିବରଣୀ ଲିପିବଦ୍ଧ ଅଛି 'ଉତ୍କଳଦୀପିକା'ର ଭାଗ-୧୧, ସଂଖ୍ୟା-୨, ଜାନୁଆରି ୮, ୧୮୭୭ର ପୃଷ୍ଠାରେ । ସେତେବେଳକୁ ନନ୍ଦକିଶୋର ଆଉ ଭାରପ୍ରାପ୍ତ ବା କାର୍ଯ୍ୟକାରୀ ଇନ୍‌ସ୍ପେକ୍ଟର ନୁହନ୍ତି; ଓଡ଼ିଶାର ସ୍କୁଲ୍ ସମୂହର ପୂର୍ଣ୍ଣାଙ୍ଗ ଜଏଣ୍ଟ ଇନ୍‌ସ୍ପେକ୍ଟର ହେଲେଣି । ସେହି ବିବରଣୀରେ ଉଲ୍ଲେଖ ଅଛି, "ଆମ୍ଭେମାନେ ଏବର୍ଷ ଅନେକଗୁଡ଼ିଏ ପରୀକ୍ଷାର୍ଥୀ ହୋଇଥିବାର ଦେଖି ଯେପରି ଆନନ୍ଦିତ ହୋଇଥିଲୁଁ ପରୀକ୍ଷାର ଫଳ ଦେଖି ସେହିପରି ଦୁଃଖିତ ହୋଇଅଛୁଁ । ଏଥିରେ ଓଡ଼ିଶାର କି ଉନ୍ନତି ହେବ ଓ ଶିକ୍ଷା ବିଷୟରେ ଓଡ଼ିଶାର ଏପରି ଶୋଚନୀୟ ଅବସ୍ଥା କେତେକାଳ ରହିବ ଭାବି ସ୍ଥିର କରିପାରୁ ନାହୁଁ । ଗତବର୍ଷ ପରୀକ୍ଷାର ଫଳ ସନ୍ତୋଷଜନକ ହୋଇ ନଥିବାରୁ ଆମ୍ଭେମାନେ ଶିକ୍ଷା ବିଭାଗର କର୍ତ୍ତୃପକ୍ଷଙ୍କୁ ଏ ବିଷୟରେ ଦୃଷ୍ଟିପାତ କରିବାକୁ ଅନୁରୋଧ କରିଥିଲୁଁ ଓ ଏବର୍ଷ ଉତ୍ତମ ଫଳର ଆଶା ରଖିଥିଲୁଁ । କିନ୍ତୁ ଆମ୍ଭମାନଙ୍କ ଆଶା ସଂପୂର୍ଣ୍ଣ ବିଫଳ ହେଲା ବରଂ ଅଧିକ ହତାଶ ହୋଇଅଛୁଁ ।"

ଏହିପରି ଶିକ୍ଷା ବିଭାଗରେ ଜଏଣ୍ଟ ଇନ୍‌ସ୍ପେକ୍ଟର ପଦରେ ପ୍ରାୟ ଦୁଇବର୍ଷ ଦକ୍ଷତାର ସହିତ କାମ କଲା ପରେ, ହରେକୃଷ୍ଣ ଦାସଙ୍କ ମୃତ୍ୟୁ ଯୋଗୁଁ ୧୮୭୮ରେ ଗଡ଼ଜାତର ଆସିଷ୍ଟାଣ୍ଟ୍ ସୁପରିଣ୍ଟେଣ୍ଡେଣ୍ଟ୍ ପଦରେ ସରକାର ତାଙ୍କୁ ନିଯୁକ୍ତ କରିଥିଲେ ନନ୍ଦକିଶୋର । କିନ୍ତୁ ସେ ନେଇ ଓଡ଼ିଶାର ଶିକ୍ଷାକ୍ଷେତ୍ରରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା । 'କେହି ଜଣେ ପ୍ରକୃତ ଓଡ଼ିଆ' 'ଉତ୍କଳଦୀପିକା'ର ସଂପାଦକଙ୍କୁ ଏକ ପତ୍ର ପ୍ରେରଣ କରି ସେ

ସଂପର୍କରେ ନିବେଦନ କରି ଲେଖିଥିଲେ, "ଯେବେ ଶ୍ରୀ ନନ୍ଦକିଶୋର ଦାସଙ୍କୁ ଶିକ୍ଷାବିଭାଗରୁ ଅନ୍ତରିତ କରାଯିବ, ତେବେ ଯାହା କିଛି ଓଡ଼ିୟା ଭାଷାର ଉନ୍ନତି ହୋଇ ଆସୁଅଛି ତହିଁର ଏକାବେଳକେ ମୂଳୋତ୍ପାଟନ ହେବ, ଏଥିରେ ସନ୍ଦେହ ନାହିଁ । * * * ଆମ୍ଭମାନଙ୍କ ପରମୋପକାରୀ ଶ୍ରୀଯୁତ କମିଶ୍ନର ସାହେବଙ୍କ ନିକଟରେ ପ୍ରାର୍ଥନା ଏହି ଯେ ଶ୍ରୀଯୁତ ବାବୁ ନନ୍ଦକିଶୋର ଦାସଙ୍କୁ ଏ ଦେଶରେ ସଂପୂର୍ଣ୍ଣ ଇନ୍‌ସ୍ପେକ୍ଟରୀ ପଦରେ ନିଯୁକ୍ତ କରାଇ ଉତ୍କଳଭାଷାର ଓ ଉତ୍କଳୀୟମାନଙ୍କର ଉନ୍ନତି ସାଧନ ବିଷୟରେ ଚିରକୀର୍ତ୍ତି ସ୍ଥାପନ କରନ୍ତୁ । ଆଉ ବାବୁ ଶ୍ରୀ ନନ୍ଦକିଶୋର ଦାସ ମହାଶୟଙ୍କ ନିକଟରେ ଆମ୍ଭମାନଙ୍କର ନିବେଦନ ଏହି ଯେ ଆପଣ ନିଜ ମାତୃଭାଷାର ଏବଂ ସ୍ୱଦେଶୀୟମାନଙ୍କର ଉନ୍ନତି ବିଷୟରେ ଦୃଢ଼ବ୍ରତୀ ହୋଇ ଶିକ୍ଷାବିଭାଗକୁ ପରିତ୍ୟାଗ କରିବାର ମାନସରେ ଚିନ୍ତା ନକରନ୍ତୁ ।" (ଉତ୍କଳଦୀପିକା, ଭାଗ-୧୧, ସଂଖ୍ୟା-୧୩, ମାର୍ଚ୍ଚ ୨୫, ୧୮୭୬)

ଏହା ସତ୍ତ୍ୱେ, ସରକାରଙ୍କର ଆବଶ୍ୟକତା ଦୃଷ୍ଟିରୁ ନନ୍ଦକିଶୋର ଦାସଙ୍କୁ ଶିକ୍ଷା ବିଭାଗର ଦାୟିତ୍ୱରୁ ଅବ୍ୟାହତି ଦିଆଯାଇ, ରାଧାନାଥ ରାୟଙ୍କୁ ସେହି ପଦବୀରେ ଅବସ୍ଥାପିତ କରାଯାଇଥିଲା । ତେବେ ସେତେବେଳକୁ ନନ୍ଦକିଶୋରଙ୍କ କାର୍ଯ୍ୟକାଳ ଶିକ୍ଷା ବିଭାଗର ଏକ କୀର୍ତ୍ତି ରୂପେ ବିବେଚିତ ହେଉଥିଲା । 'ଉତ୍କଳଦୀପିକା'ର ପ୍ରେରିତ ପତ୍ରରେ ଏ ସଂପର୍କରେ ଉଲ୍ଲେଖ ମିଳେ । ସେତେବେଳେ 'ଠିକ୍‌ଠାକ୍' ନାମରେ ଜଣେ ପତ୍ରପ୍ରେରକ ଲେଖିଥିଲେ, "ବର୍ତ୍ତମାନ ଓଡ଼ିଶା ବିଦ୍ୟାଳୟ ସମୂହର ବାବୁ ନନ୍ଦକିଶୋର ଦାସ ଜଏଣ୍ଟ ଇନ୍‌ସ୍ପେକ୍ଟର ଅଟନ୍ତି । ଜଣେ ଦେଶୀୟ ଲୋକ ଜଏଣ୍ଟ ଇନ୍‌ସ୍ପେକ୍ଟର ହେଲେ ଓଡ଼ିଶା ବିଦ୍ୟାଶିକ୍ଷାର ଓ ଓଡ଼ିୟାଭାଷାର ବହୁ ମଙ୍ଗଳ ହେବ ବୋଲି ରାଭେନ୍‌ସା ସାହେବ ତାଙ୍କୁ ଡେପୁଟୀ କିଲଟରିରୁ ଆଣି ଏ କାର୍ଯ୍ୟରେ ନିଯୁକ୍ତ କରାଇଥିଲେ । ଉକ୍ତ ବାବୁ ମଧ୍ୟ ଆଶାନୁରୂପ କାର୍ଯ୍ୟ କରିଅଛନ୍ତି । ଓଡ଼ିଶାର ଶିକ୍ଷିତ ଲୋକେ ଯଥାସାଧ୍ୟ ଶିକ୍ଷାର ପୁରସ୍କାର ବାବୁଙ୍କଠାରୁ ପାଇଅଛନ୍ତି । ଓଡ଼ିଶା ବିଦ୍ୟାଳୟ ଓ ପାଠଶାଳାଚୟର ଶିକ୍ଷାପ୍ରଣାଳୀ ଏହିବାବୁଙ୍କ ଯତ୍ନରେ କ୍ରମଶଃ ଉନ୍ନତ ହେଉଅଛି । ତାଙ୍କଦ୍ୱାରା ବିଦ୍ୟାଳୟର ବୃତ୍ତିପରୀକ୍ଷାନିଚୟର ଶୃଙ୍ଖଳା ସମ୍ୟକ୍ ରୂପେ ସ୍ଥାପିତ ହୋଇଅଛି । ଉତ୍କଳ ପୁସ୍ତକମାନ ନିର୍ବାଚନ କରି ଉତ୍ତମ ଉତ୍ତମ ପୁସ୍ତକମାନଙ୍କୁ ବିଦ୍ୟାଳୟର ପାଠ୍ୟପୁସ୍ତକ ସ୍ୱରୂପ ନିର୍ଦ୍ଧାରିତ କରି ଉତ୍ତମ ଓଡ଼ିୟା ପୁସ୍ତକ ରଚନା ବିଷୟରେ ଯଥେଷ୍ଟ ଉତ୍ସାହ ଦେଇଅଛନ୍ତି । ଏହିପରି ଗୋଟିଏ ଗୋଟିଏ କରି ତାଙ୍କ କାର୍ଯ୍ୟ କଥା ଲେଖିବା ମୋ ପକ୍ଷରେ ବାହୁଲ୍ୟ ମାତ୍ର ।" (ଉତ୍କଳ ଦୀପିକା, ଅତିରିକ୍ତ, ସେପ୍ଟେମ୍ବର ୨୯, ୧୮୭୭)

ନନ୍ଦକିଶୋରଙ୍କ ପରେ ଓଡ଼ିଶାର ନୂଆ ଜଏଣ୍ଟ ଇନ୍‌ସ୍ପେକ୍ଟର ପଦବୀରେ ଅବସ୍ଥାପିତ କରାଯାଇଥିଲା ସୁଯୋଗ୍ୟ ରାଧାନାଥ ରାୟଙ୍କୁ । ସେତେବେଳକୁ ଓଡ଼ିଶାରେ ଅବସ୍ଥାପିତଦ ଦାୟିତ୍ୱରେ ଥିଲେ ଆଉ ଜଣେ ଦକ୍ଷ ଓଡ଼ିଆପ୍ରେମୀ ଇଂରେଜ ପ୍ରଶାସକ ଜନ୍ ବୀମ୍‌ସ । ସେ

ନେଇ 'ଉତ୍କଳଦୀପିକା' ମଧ୍ୟ ସନ୍ତୋଷ ବ୍ୟକ୍ତ କରି ଲେଖିଥିଲେ, "ଆମ୍ଭମାନଙ୍କ ମତରେ ବାବୁ ନନ୍ଦକିଶୋରଙ୍କ ଉତ୍ତାରୁ ବାବୁ ରାଧାନାଥ ରାୟଙ୍କୁ ମନୋନୀତ କରିବାରେ ଶ୍ରୀଯୁକ୍ତ ବୀମ୍ସ ସାହେବ ଉତ୍ତମ କରିଅଛନ୍ତି ଏବଂ ଏଥିରେ ଓଡ଼ିଶାର ଲୋକମାନେ ସନ୍ତୁଷ୍ଟ ହେବାର ଜଣାଯାଏ ।" (ଉତ୍କଳଦୀପିକା, ଭାଗ-୧୨, ସଂଖ୍ୟା-୪୬, ସେପ୍ଟେମ୍ବର ୨୪, ୧୮୭୭) ଉକ୍ତ ପଦରେ ଅବସ୍ଥାପିତ ହେବା ପରେ ନନ୍ଦକିଶୋରଙ୍କର ଗଠନମୂଳକ କାର୍ଯ୍ୟସବୁକୁ ଦକ୍ଷତାର ସହ ଆଗେଇ ନେଇ ଆହୁରି ଯଶସ୍ୱୀ ହୋଇଥିଲେ ରାଧାନାଥ ରାୟ । ପରେ ତାଙ୍କୁ 'ରାୟବାହାଦୁର' ପଦବୀରେ ମଧ୍ୟ ଇଂରେଜ ସରକାର ଭୂଷିତ କରିଥିଲେ ।

ରାଧାନାଥ ରାୟଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧା ଥିଲା ନନ୍ଦକିଶୋର ଦାସଙ୍କର । ନିଜ କାର୍ଯ୍ୟକାଳରେ ତାଙ୍କ ଜଏଣ୍ଟ ଇନ୍‌ସ୍ପେକ୍ଟର ରିପୋର୍ଟରେ, ସେ ରାଧାନାଥଙ୍କ ଦକ୍ଷତା ଓ କୃତିତ୍ୱର ପ୍ରଶଂସା ମଧ୍ୟ କରିଥିଲେ । ତେଣୁ ଓଡ଼ିଶାର ଶିକ୍ଷା ବିକାଶ କ୍ଷେତ୍ରରେ ନିଶ୍ଚିନ୍ତତା ଅନୁଭବ କରି ସେ ଧ୍ୟାନ ଦେଇଥିଲେ ନିଜର ନୂତନ କର୍ମ କ୍ଷେତ୍ରରେ । ତାହା ଯଥାକ୍ରମେ ଥିଲା ଗଡ଼ଜାତର ଆସିଷ୍ଟାଣ୍ଟ୍ ସୁପରିଣ୍ଟେଣ୍ଡେଣ୍ଟ୍, ଅନୁଗୁଳ ଓ କନ୍ଧମାଳର ଜିଲ୍ଲା ମାଜିଷ୍ଟ୍ରେଟ୍ ଓ କଲେକ୍ଟର ଏବଂ କେନ୍ଦୁଝରର ପଲିଟିକାଲ୍ ଏଜେଣ୍ଟ୍ ପଦବୀ । ପଲିଟିକାଲ୍ ଏଜେଣ୍ଟ ପଦବୀରେ ଥିବାବେଳେ ସେଠାର ଭୂୟାଁ ମେଳି ସଂପର୍କରେ ତାଙ୍କର ପଦକ୍ଷେପଗୁଡ଼ିକ ଥିଲା ପ୍ରଶଂସନୀୟ । ପ୍ରାୟ ଦେଢ଼ ବର୍ଷ ପରେ ଅନୁଗୁଳ ଫେରି ନନ୍ଦକିଶୋର ଦାସ ଡେପୁଟୀ କମିଶନର ମଧ୍ୟ ହୋଇଥିଲେ । ଏହି ପର୍ଯ୍ୟାୟର କାର୍ଯ୍ୟକାଳ ମଧ୍ୟରେ ୧୮୯୦ ମସିହାରେ ବଙ୍ଗୀୟ ସେକ୍ରେଟାରୀ ଏଡ଼ଗାର୍ ସାହେବ ତାଙ୍କୁ ସରକାରଙ୍କ ପକ୍ଷରୁ 'ରାୟବାହାଦୁର' ଉପାଧିରେ ମଧ୍ୟ ଭୂଷିତ କରିଥିଲେ ।

ଏଣୁ ଯଥାର୍ଥରେ ନନ୍ଦକିଶୋର ଦାସ ଥିଲେ ଓଡ଼ିଶାର ଏକ କୀର୍ତ୍ତିସ୍ତମ୍ଭ । ସେଥିପାଇଁ ଫକୀରମୋହନ 'ଉତ୍କଳ ଭ୍ରମଣ'ରେ ତାଙ୍କର ପ୍ରଶସ୍ତି ଗାନ କରି ଲେଖିଥିଲେ, 'ଜୟ ଜୟ ଜୟ ଓଡ଼ିଶାର ମନୁମେଣ୍ଟ' ଏବଂ ତାଙ୍କର ମୃତ୍ୟୁ ପରେ ମଧୁସୂଦନ ଦାସ ଉତ୍କଳବାସୀଙ୍କୁ ଆହ୍ୱାନ ଦେଇ ଲେଖିଥିବା ଲେଖାରେ କହିଥିଲେ, "ସେ ଆମ ହୃଦୟରେ ଅଧିଷ୍ଠିତ ଏକ ମନୁମେଣ୍ଟ । ଆମ ଚକ୍ଷୁ ସମକ୍ଷର ଏକ ଆବକ୍ଷ ମାର୍ବଲ ପ୍ରତିମୂର୍ତ୍ତି ।"

ଆଜିର ସମୟରେ ହୁଏତ ନନ୍ଦକିଶୋର ଦାସଙ୍କର ପ୍ରାସଙ୍ଗିକତା ନଥାଇପାରେ; ମାତ୍ର ଓଡ଼ିଶାର ଶିକ୍ଷା ଓ ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟରେ ତାଙ୍କର ଉଲ୍ଲେଖନୀୟ କୃତିତ୍ୱ ନିଶ୍ଚିତ ଭାବରେ ଆମ ଓଡ଼ିଶାର ଏକ ପ୍ରାଚୀନ କୀର୍ତ୍ତି ।

□□□

୧୮୯୪ ମସିହା ଏପ୍ରିଲ୍ ମାସ ୬ ତାରିଖ ଦିନ ଅକାଳ ବିୟୋଗ ଘଟିଥିଲା। ରାୟବାହାଦୁର ନନ୍ଦକିଶୋର ଦାସଙ୍କର । ତାଙ୍କର ବିୟୋଗରେ ସେତେବେଳର ପ୍ରମୁଖ ସାପ୍ତାହିକ ପତ୍ରିକା 'ଉତ୍କଳ ଦୀପିକା'ର ଏପ୍ରିଲ୍ ୧୪ ତାରିଖରୁ ମେ ୫ ତାରିଖ ପର୍ଯ୍ୟନ୍ତ ସଂଖ୍ୟାରେ ଯେଉଁ ସବୁ ଖବର, ଲେଖା ଓ ସଂପାଦକଙ୍କୁ ପତ୍ର ଆଦି ପ୍ରକାଶ ପାଇଥିଲା, ତାହା 'ସୃଜନିକା' ତଥା ଶ୍ରୀ ନିଖିଳ ମୋହନ ପଟ୍ଟନାୟକଙ୍କ ସୌଜନ୍ୟରୁ ଏଠାରେ ସଂକଳିତ । **AN ORIYA** ନାଆଁରେ ମଧୁସୂଦନ ଦାସ ଲେଖିଥିବା ଇଂରାଜୀ ଲେଖା ଓ ଚନ୍ଦ୍ରମୋହନ ମହାରଣାଙ୍କ ବିବରଣୀ ଏ ପ୍ରସଙ୍ଗରେ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ।

–ସଂକଳନ: ଅସିତ ମହାନ୍ତି

# A CALL

## (ଉତ୍କଳଦୀପିକା, ୧୪ଏପ୍ରିଲ୍, ୧୮୯୪)

What was Nandakishore? He was a great man, a hero- hero in the sense that he was an officer equal to his office. Emerson the great American philosopher in his essay on "Use of Greatmen" says- "I admire great men of all classes, those stand for facts and for thoughts. I like rough and smooth, 'scourges of God' and 'Darlings of the human race'. I applaud a sufficient man, an officer equal to his office; captains, ministers, senators. I like a master standing firm on legs of iron, well-born, rich, handsome, drawing all men by fascination into tributaries and supporters of his power. Sword or staff or talents sword-like or staff-like carry on the work of the world."

Nandakishore was an able, intelligent, active and meritorious officer of high rank and position. It is through ability, tact, self-exertion, self-study, intelligence, he from mere a clerk of very low pay, rose to the exalted position of Dy. Commissioner. Is it not a great glory to Orissa for a son of her to be political agent and Deputy Commissioner? It is he who with his sharp intelligence dexterity has erased out the abusive epithets "dull-headed, blockhead, stupid, foolish etc." which were being showered upon the Oriyas some years ago. Although Nandakishore was not a patriot Like Kristo Das Pal, phillanthropist like Howard, religious enthusiast like Chaitanya or

Kesab, politicians like Prince Bismark, warrior like Alexander the Great or Napoleon Bonaparte, he was what he was- an officer equal to his office- a Hero, a Great man. Was he not so? Undoubtedly the Oriya public and others of other countries, who have come in contact with him for half an hour, will answer the question in the affirmative. He had an all-embracing patronage. He was everybody's favourite and everybody was his favourite who he was equal to his office. He was a very good judge of merits. People say, he has done nothing for his country. I say he was done much for his country, which the country itself knows and the Orissa Graduates and Undergraduates know. Those that have eyes will see, and ears will hear what he has done, when a comprehensive life of the hero will be before the public.

Men whose life's motto is nil admirers, in their eye Nandakishore will no doubt be an intelligent fellow- an ordinary worldling. But apart from partiality and selfish judgment he was a great man, a hero- an Oriya hero. What is society? Society is of individuals. If one member of the society becomes great, does he not cast lustre on the entire society? Has he not in this respect done much for his country? Has he not then left behind him "foot prints on the sands of time" for his country-men to trace the path the glory and fame? We may not worship him as a great hero, patriot, warrior, religious reformer or a prophet, who may at least take him as our great guide to glory and fame- a teacher in politics; an able officer; an exalted Oriya; a country man of high rank and position. Does he not then deserve our worship- a monument in our hearts, a marble bust before our eyes? It will be sheer injustice to his departed soul if we fail to contribute our quota towards the perpetuation of his sacred memory. We live by "hope admiration, and love" if a worthy countryman of our goes Home without being loved, lamented and lauded what are then? – a nation of misanthropes and fratricides.

Brethern, friends and countrymen should we them lie dormant by bidding a simply a cold farewell to one who raised our country to a great height and exalted our nation in the eyes of other nations? Young Orissa! What steps are you taking for Nandakishore Bahadur? Some years ago when Baba Surendranath Banerjee was in jail for

contempt of Court, some of you, I remember it very well, were collecting subscriptions to release Surendranath from Jail. I then under a fictitious name " a harmless thunderbolt" asked you in the columns of the Utkal Dipika to preserve your the then warmest feelings for a future occasion in the cause of your country. Now the long expected time has at last come. The iron is hot now. Will you not strike it repeatedly to give it a shape before it grows cold ?

The 19th Century is an age of a hero-worship. Every country worships her own hero. Why should we then not? Are we so apathetic, cold, clownish and uncultured as to be deaf to such a call-such a sense of duty?

Cuttack, 13.4.1894 AN ORIYA

# ୪ ରାୟ ନନ୍ଦକିଶୋର ଦାସ ବାହାଦୁର

## (ଉତ୍କଳଦୀପିକା, ୧୪ ଏପ୍ରିଲ୍ ୧୮୯୪)

ରାୟ ନନ୍ଦକିଶୋର ଦାସ ବାହାଦୁର ଆଉ ନାହାନ୍ତି । ଏହି ଦାରୁଣ ଶୋକସମ୍ବାଦ ଗତ ରବିବାର ସକାଳବେଳେ ଅନୁଗୁଳଠାରୁ ଆସି ଏ ନଗରରେ ପ୍ରଚାରିତ ହେଲା ଓ ଚତୁର୍ଦ୍ଦିଗରେ ହାହାକାର ରବ ଉଠିଲା । ଗଛ ପତ୍ର ସୁଦ୍ଧା ଝୁରିବାର ଯାହା ପ୍ରଚଳିତ କଥା ଅଛି ନନ୍ଦକିଶୋର ବାବୁଙ୍କ ସମ୍ବନ୍ଧରେ ପ୍ରକୃତ ତାହା ଦେଖାଗଲା । ତାହାଙ୍କ ଆତ୍ମୀୟ ବନ୍ଧୁ ଓ ପ୍ରୀତି ପରିଚିତ ଲୋକଙ୍କ କଥା ତେଣିକି ଥାଉ, ବଜାରର ଲୋକେ ସୁଦ୍ଧା ଏ ଦୁଃଖ ସମ୍ବାଦରେ ବିସ୍ମିତ ଓ ସ୍ତମ୍ଭିତ ହେଲେ ଏବଂ ନାନା ଗୁଣ ବାହୁନି ଗଭୀର ଦୁଃଖ ପ୍ରକାଶ କଲେ । ଅବଧି ସେହି ଶୋକଚର୍ଚ୍ଚା ଚାରିଆଡ଼େ ଲାଗି ରହିଅଛି ଏବଂ ଦୀର୍ଘକାଳ ପର୍ଯ୍ୟନ୍ତ ପାସୋରି ଯିବ ନାହିଁ କାରଣ ତାହାଙ୍କ ବିୟୋଗରେ ଓଡ଼ିଶାରେ ଯେଉଁ କ୍ଷତି ହୋଇଅଛି ତାହା ପୂର୍ଣ୍ଣ ହେବାର ଆଶା ନାହିଁ । ଉତ୍କଳମାତା ଚିରଦୁଃଖିନୀ । ବହୁକାଳ ତପସ୍ୟା କରି ନନ୍ଦକିଶୋର ପରି ଗୋଟିଏ ଦୁର୍ଲ୍ଲଭ ପୁତ୍ରରତ୍ନ ପାଇଥିଲେ କି ଯହିଁର ଅସାଧାରଣ ଜ୍ୟୋତିରେ ସମସ୍ତ ଦିଗ ଉଜ୍ଜ୍ୱଳ ହୋଇଥିଲା । ମାତା ଆଶା କରିଥିଲେ ଏକ ସୁପୁତ୍ର ଯୋଗେ ସମସ୍ତ ଦୁଃଖ ପାସୋରିବେ ଏବଂ ପୁତ୍ରର ଉତ୍ତରୋତ୍ତର ବୃଦ୍ଧି ଦେଖି ଅଧିକତର ଗୌରବାନ୍ୱିତ ହେଉଥିବେ । ଦୁଃଖିନୀ ରାଜ୍ୟର ସୁଖଭୋଗ ହେବା ସହଜ ନୁହେଁ ଏବଂ ସୁଖର ଗତି ଚଞ୍ଚଳ । ଅକାଳେ କାଳ ସେହି ପୁତ୍ରରତ୍ନକୁ ହରଣ କରି ମନର ସବୁ ଆଣ୍ଠ

ଭାଙ୍ଗିଦେଲା । ଏପରି ଯୋଗ୍ୟପୁତ୍ର ହରାଇ କେଉଁ ମାତା ଦେହ ଧରିପାରେ । ଦୁଃଖିନୀ ଉତ୍କଳମାତାର ଆଜି ସେହି ଅସହ୍ୟ ଦଶା ଘଟିଅଛି ଏବଂ ଏଥିପାଇଁ ସମସ୍ତ ଉତ୍କଳବାସୀ ବିଷାଦସାଗରରେ ବୁଡ଼ି ଅଛନ୍ତି । ପ୍ରାୟ ଦେଢ଼ ମାସ ହେବ ନନ୍ଦକିଶୋର ବାବୁ ପୀଡ଼ିତ ହେବାର ସମ୍ବାଦ ପ୍ରଚାର ହୋଇଥିଲା । ଆମବାତ ରୋଗରେ ଗଣ୍ଠି ସବୁ ଫୁଲିଯାଇ ସର୍ବାଙ୍ଗ ବେଦନା ହୋଇଥିଲା ଏବଂ ତହିଁ ସଙ୍ଗେ ଜ୍ୱର ଥିଲା । ମଧ୍ୟେ କିଛି ଆରୋଗ୍ୟ ହେବାର ଶୁଣା ଯାଇଥିଲା । ମାତ୍ର ବେଦନା ହେତୁ ସେ ଅନୁଗୁଳରୁ ଏ ନଗରକୁ ଆସି ପାରି ନ ଥିଲେ । ତଥାପି ତାହାଙ୍କୁ ଆଣିବା ସକାଶେ ଏଠାରୁ ସୁଆରି ଯାଇଥିଲା । କିନ୍ତୁ ହାୟ ! ସେହି ରୋଗ ତାହାଙ୍କର ନିଦାନ ହେଲା ଏବଂ ଗତ ପୂର୍ବ ଶୁକ୍ରବାର ଶେଷ ରାତ୍ରରେ ସେ ସ୍ତ୍ରୀ, ପୁତ୍ର, କନ୍ୟା, ବନ୍ଧୁବାନ୍ଧବଙ୍କୁ ମହାଶୋକସାଗରରେ ପକାଇ ଦେଇ ଦିବ୍ୟଧାମକୁ ଗମନ କଲେ ।

ରାୟ ନନ୍ଦକିଶୋର ଦାସ ବାହାଦୁରଙ୍କ ଜୀବନୀ ଗୋଟିଏ ଉତ୍କୃଷ୍ଟ ଆଦର୍ଶ ଜୀବନୀ ଅଟଇ । ବର୍ତ୍ତମାନ ତାହା ଲେଖିବାର ସ୍ଥାନ ଓ ଅବକାଶ ନାହିଁ । ଭରସା କରୁ ତାହା ଯୋଗ୍ୟ ଲୋକଙ୍କଦ୍ୱାରା ଅବିଳମ୍ବେ ପ୍ରକାଶିତ ହୋଇ ଉତ୍କଳବାସୀଙ୍କ ଶିକ୍ଷା ଓ ଉତ୍ସାହର ସାହାଯ୍ୟ କରିବ । ଆପାତତଃ ଆମ୍ଭେମାନେ ତାହାଙ୍କ କାର୍ଯ୍ୟ ଓ ଗୁଣ ସମ୍ବନ୍ଧୀୟ ଦୁଇଚାରି କଥା ପାଠକମାନଙ୍କୁ ସ୍ମରଣ କରାଇ ଦେବା ନିମନ୍ତେ ଲେଖୁଅଛୁଁ କି ସେ ଓଡ଼ିଶାବାସୀ ବିଖ୍ୟାତ ମୃତବାବୁ ନରସିଂହ ଚରଣ ଦାସଙ୍କର କନିଷ୍ଠ ସନ୍ତାନ । ନରସିଂହ ଚରଣ ବାବୁ ବହୁକାଳ କଟକ ଓ ପୁରୀରେ ଡେପୁଟି କଲେକ୍ଟରୀ କାର୍ଯ୍ୟକରି ଖ୍ୟାତି ଅର୍ଜିଥିଲେ ଏବଂ ତାହାଙ୍କୁ ଜଣେ ସଚ୍ଚରିତ୍ର, ସଦାଳାପୀ ଓ ଧାର୍ମିକ ଲୋକ ବୋଲି ସମସ୍ତେ ମାନୁଥିଲେ । ନନ୍ଦକିଶୋର ପ୍ରବେଶିକା ପରୀକ୍ଷା ପାସ୍‌କରି ସ୍କୁଲ୍ ପଢ଼ିବା ଉତ୍ତାରୁ (ସେ ସମୟରେ ଏଥିରୁ ଅଧିକ ଶିକ୍ଷାର ଉପାୟ ଏ ଦେଶରେ ନଥିଲା) ସନ ୧୮୬୪ ସାଲର ଶେଷଭାଗରେ ପ୍ରାୟ ବ୨୦ର୍ଷ ବୟସରେ ପୁରୀ କଲେକ୍ଟରୀ କଚେରୀରେ କିରାନିଗିରି କାର୍ଯ୍ୟରେ ଭରତି ହେଲେ । ଓଡ଼ିଶା ବନ୍ଧୁ ଶ୍ରୀଯୁକ୍ତ ରେବନସା ସାହେବ କମିସନର ଓଡ଼ିଆମାନଙ୍କ ମଧ୍ୟରୁ କାହାରି କାହାରିକୁ ଉଚ୍ଚପଦରେ ଭରତି କରିବାର ମାନସସିଦ୍ଧି ଉଦ୍ଦେଶ୍ୟରେ ଏହାଙ୍କ ନାମରେ ରିପୋର୍ଟ କରିବାରୁ ସନ ୧୮୭୧ ସାଲରେ ଗବର୍ଣ୍ଣମେଣ୍ଟ ଏହାଙ୍କୁ ଡେପୁଟୀ କଲେକ୍ଟରୀ ଓ ଡେପୁଟୀ ମାଜିଷ୍ଟ୍ରେଟୀ ପ୍ରଦାନ କଲେ । ସନ ୧୮୭୫ ସାଲରେ ସେ ଓଡ଼ିଶା ସ୍କୁଲ୍ ସମୂହର ଜଏଣ୍ଟ ଇନ୍‌ସ୍ପେକ୍ଟର ନିଯୁକ୍ତ ହେଲେ ଏବଂ ପ୍ରାୟ ଦୁଇବର୍ଷ ସେ କାର୍ଯ୍ୟ କଲା ଉତ୍ତାରୁ ପୁଣି ଡେପୁଟୀ କାର୍ଯ୍ୟକୁ ଫେରି ଆସି ହରିବାବୁଙ୍କ ମୃତ୍ୟୁ ଉତ୍ତାରୁ ସନ ୧୮୭୮ ସାଲରେ ଗଡ଼ଜାତର ଆସିଷ୍ଟାଣ୍ଟ ହେଲେ । ଅନୁଗୁଳ ପ୍ରଭୃତି ଗଡ଼ଜାତର ଗତ ଦୁର୍ଭିକ୍ଷ ସମୟରେ ବଙ୍ଗୀୟ ସେକ୍ରେଟାରୀ ମାନ୍ୟବର ଏଡ଼ଗାର ସାହେବ ଅନୁସନ୍ଧାନ ଓ ସାହାଯ୍ୟ ନିମନ୍ତେ ଏଠାକୁ ଆସି ତାହାଙ୍କର ଅସାଧାରଣ ଗୁଣରେ ମୋହିତ ହୋଇ ପୁରସ୍କାର ସ୍ୱରୂପ ତାହାଙ୍କୁ ରାୟ ବାହାଦୁର ପଦ ଦିଆଇଲେ ଏବଂ ତହିଁ ପଛେ ପଛେ ସନ ୧୮୯୦ ସାଲରେ ଗବର୍ଣ୍ଣମେଣ୍ଟ ତାହାଙ୍କୁ ଦେଶୀୟ ସିଭିଲ୍‌ସର୍ଭିସ୍‌ରେ ଭରତି

କରି ଆସିଷ୍ଟାଣ୍ଟ୍ କଲେକ୍ଟର ପଦରେ ନିଯୁକ୍ତି କଲେ । ସନ ୧୮୯୧ ସାଲରେ ଅନୁଗୁଳ ଓ କନ୍ଧମାଳ ଗୋଟିଏ ପୃଥକ୍ ଜିଲ୍ଲା ହେଲା ଏବଂ ରାୟ ନନ୍ଦକିଶୋର ବାହାଦୁର ସେଠାର ପ୍ରଥମ ମାଜିଷ୍ଟ୍ରେଟ୍ ଓ କଲେକ୍ଟର ନିଯୁକ୍ତ ହେଲେ । ସନ ୧୮୯୨ ସାଲରେ ପୋଲିଟିକଲ୍ ଏଜେଣ୍ଟ ନିଯୁକ୍ତ ହୋଇ କେଉଁଝରକୁ ଗଲେ ଏବଂ ଦେଢ଼ବର୍ଷ ଉତ୍ତାରୁ ସେଠାରୁ ଅନୁଗୁଳକୁ ଫେରିଯାଇ ମୃତ୍ୟୁର ଅଳ୍ପ କାଳ ପୂର୍ବେ ସେଠାରେ ଡେପୁଟୀ କମିଶନର ହୋଇଥିଲେ । ଓଡ଼ିଶାବାସିଙ୍କ ମଧ୍ୟରେ ନନ୍ଦକିଶୋର ସର୍ବପ୍ରଥମ କଲେକ୍ଟର ଓ ଡେପୁଟୀ କମିଶନର ହୋଇ ଉତ୍କଳର ମୁଖ ଉଜ୍ଜ୍ୱଳ କଲେ । ଏତିକି ନୁହେ ସେ ଯେମନ୍ତ ଚଞ୍ଚଳ ଉନ୍ନତି ପାଇଲେ ବଙ୍ଗଳାରେ ମଧ୍ୟ ବିରଳ । ଏ ସମସ୍ତ ତାହାଙ୍କ ଅସାଧାରଣ ଯୋଗ୍ୟତା ଅଧ୍ୟବସାୟ ଓ ବୁଦ୍ଧି କୌଶଳର ଫଳ ଅଟଇ । ସେ ସରକାରୀ କାର୍ଯ୍ୟରେ ମହତ ଗୁଣ ଦେଖାଇ ଯେମନ୍ତ ଗବର୍ଣ୍ଣମେଣ୍ଟଙ୍କଠାରୁ ସୁଖ୍ୟାତି ଓ ଉନ୍ନତି ଲଭିଥିଲେ ତେମନ୍ତ ପ୍ରଜାବର୍ଗଙ୍କର ପ୍ରିୟ ଭକ୍ତିଭାଜନ ହୋଇଥିଲେ । ଅମଲା ମାମଲତିକାର ପ୍ରଭୃତି ସମସ୍ତେ ତାହାଙ୍କ ସଦ୍‌ବ୍ୟବହାର ଓ ଦୟା ବାତ୍ସଲ୍ୟଭାବରେ ବଶିଭୂତ ଥିଲେ । ସେ ସର୍ବଦା ସୁପ୍ରସନ୍ନ ଶାନ୍ତ ଓ ମିଷ୍ଟାଳାପୀ ଥିଲେ । ସମାଜର ଉନ୍ନତି ତାହାଙ୍କ ମନରେ ଜାଗ୍ରତ ଥିଲା ଏବଂ ବନ୍ଧୁବାନ୍ଧବ ଓ ଅନୁଗତ ଲୋକଙ୍କଠାରେ ଯଥୋଚିତ ପ୍ରେମ ଓ ସହାନୁଭୂତି ଦେଖାଇବାରେ କେବେ ତ୍ରୁଟି ନ ଥିଲା । ତାହାଙ୍କ ସଦ୍‌ଗୁଣାବଳିରେ ପ୍ରୀତ ହୋଇ ଲୋକେ ତାହାଙ୍କର ଆହୁରି ଉନ୍ନତି ଲୋଡୁଥିଲେ । ଅନ୍ତତଃ ଯେଉଁ ଉଚ୍ଚ ପଦ ସେ ପାଇଥିଲେ ତାହା ଦୀର୍ଘକାଳ ଭୋଗ କରିଥିଲେ ସମସ୍ତଙ୍କର ଆଶା ମେଣ୍ଟିଥାନ୍ତା ଓ ଦେଶର ଉପକାର ହୋଇଥାନ୍ତା । ବଡ଼ ଦୁଃଖର ବିଷୟ ଯେ ବ୪୮ର୍ଷ ବୟସରେ ସଂସାର ଲୀଳା ଶେଷ ହେଲା । ପରମେଶ୍ୱର ଏହାଙ୍କର ଆତ୍ମାର ମଙ୍ଗଳ ଏବଂ ଶୋକାତୁରା ସ୍ତ୍ରୀ ପରିବାରବର୍ଗଙ୍କର ସାନ୍ତ୍ୱନା ବିଧାନ କରନ୍ତୁ ।

# ରାୟ ନନ୍ଦକିଶୋର ଦାସ ବାହାଦୁର

## (ଉତ୍କଳଦୀପିକା, ୨୧ ଏପ୍ରିଲ୍, ୧୮୯୪)

ରାୟ ନନ୍ଦକିଶୋର ଦାସ ବାହାଦୁରଙ୍କୁ ହରାଇ ଓଡ଼ିଶାମାତା ଦାରୁଣ ଶୋକମଗ୍ନା ହୋଇ ଅଛନ୍ତି । ତାଙ୍କ ପରି ସୁଯୋଗ୍ୟ ପୁତ୍ର ଆଉ ମିଳିବ ଏପ୍ରକାର ଆଶା ମରୀଚିକା ତୁଲ୍ୟ ବୋଧ ହେଉଅଛି । ରାୟ ବାହାଦୁର ସମସ୍ତ ଶ୍ରେଣୀର ଲୋକଙ୍କୁ ଦୁଃଖ ସାଗରରେ ମଗ୍ନ କରିଦେଇ ଚାଲିଗଲେ । କେନ୍ଦୁଝରରେ ଯେଉଁ ପରିଶ୍ରମ କରିଥିଲେ ତାହା ଅତ୍ୟନ୍ତ ଅଧିକ ହୋଇଥିବାରୁ ତାଙ୍କ ଶରୀରରେ ସହ୍ୟ ହୋଇ ପାରି ନ ଥିଲା । ପରିଶ୍ରମର ଅତ୍ୟାଧିକ୍ୟ ହେତୁ ଅବଶେଷରେ ତାଙ୍କୁ ଅକାଳ ମୃତ୍ୟୁଗ୍ରାସରେ ପତିତ ହେବାକୁ ହେଲା । ତାଙ୍କର କର୍ତ୍ତବ୍ୟ କାର୍ଯ୍ୟ ସେ କରିଗଲେ

କିନ୍ତୁ ଅସମୟରେ ଗମନ କରିଥିବାରୁ ସମସ୍ତେ ଦୁଃଖାଗ୍ନିରେ ଦହ୍ୟମାନ ହେଉଅଛନ୍ତି । ରାୟ ବାହାଦୁରଙ୍କ ଆମବାତ ରୋଗକୁ କନ୍ୟା ବିୟୋଗ ଦୁଃଖ କ୍ରମଶଃ ବୃଦ୍ଧି କରିଥିଲା । କନ୍ୟାର ଅକାଳ ମୃତ୍ୟୁ ତାଙ୍କ ହୃଦୟକୁ ଚିନ୍ତାରେ ଦଗ୍ଧ କରୁଥିଲା । ପୀଡ଼ିତାବସ୍ଥାରେ ସର୍ବଦା ଆକ୍ଷେପ କରିଥିଲେ ଯେ କନ୍ୟାର ଚିକିତ୍ସା ଭଲ ରୂପେ ହୋଇ ନ ଥିବାରୁ ତାହାର ମୃତ୍ୟୁ ହୋଇଅଛି । ତାଙ୍କ କନ୍ୟା ମୃତ୍ୟୁ ପୂର୍ବରୁ ଯେପରି "ଆଉ ବଞ୍ଚିବି ନାହିଁ" ବୋଲି ପ୍ରକାଶ କରିଥିଲେ ଏହାଙ୍କ ମନରେ ମଧ୍ୟ ତଦ୍ରୂପ ଭାବ ଜାତ ହୋଇଥିଲା । ସେ ଅନେକ ଥର କହିଥିଲେ ଯେ "ଏ ରୋଗ ଉପଶମ ହେବାର ନୁହ କାରଣ ମୋର ମାତାଙ୍କୁ ଏ ରୋଗ ହୋଇଥିଲା । ସେଥିରେ ଅନେକ ଉପାୟ କରାଯାଇଥିଲା କିନ୍ତୁ ସେ ଭଲ ହେଲେ ନାହିଁ । ଏହେତୁ ମୋହ ହୃଦୟରେ ଏହି ଆଶଙ୍କା ପୂର୍ବକଥା ସ୍ମରଣରେ ଜାଗରୁକ ହେଉଅଛି" । ଆଉ ଦିନେ କଥା ପ୍ରସଙ୍ଗରେ କହିଥିଲେ, "ଯେ ମୋହର ବୋଧ ହେଉଅଛି ମୁଁ ଭଲ ହୋଇ କଟକ ଯାଇ ବନ୍ଧୁବାନ୍ଧବମାନଙ୍କୁ ଦେଖିପାରିବି ନାହିଁ, କାରଣ ଏ ଆଶା ମୋହର ଦିନ ୨ କମ୍ ହେଉଅଛି ମଧ୍ୟ ଆତ୍ମୀୟଗଣଙ୍କ ସଙ୍ଗେ ହୋଇଥିବା କାର୍ଯ୍ୟକଳାପ ସତତ ମନେପଡୁଅଛି" । ତାଙ୍କ ମନରେ ଯେ ଏ ପ୍ରକାର ଆଶଙ୍କା ହୋଇଥିଲା ତାହା ତାଙ୍କର ପ୍ରିୟବନ୍ଧୁ ବାବୁ ମଧୁସୂଦନ ଦାସଙ୍କ ନିକଟକୁ ମୃତ୍ୟୁର ଦୁଇଦିବସ ପୂର୍ବରୁ ସେ ଯେଉଁ ପତ୍ର ଲେଖିଥିଲେ ତହିଁରୁ ସ୍ପଷ୍ଟ ବୋଧ ହେଉଅଛି । ରାୟ ବାହାଦୁରଙ୍କ ଜ୍ୱର ତାଙ୍କର ନିଦାନ ହୋଇଥିବାର ସେ ଭୟ କରିଥିଲେ । ସେ ଉକ୍ତ ପତ୍ରରେ ତାଙ୍କ ବନ୍ଧୁଙ୍କଠାରୁ ଚିରବିଦାୟ ଗ୍ରହଣ କରି ତାଙ୍କର ସ୍ତ୍ରୀ ବାଳକ ବାଳିକାଙ୍କ ଭାର ଗ୍ରହଣ କରିବାକୁ ଶେଷ ପ୍ରାର୍ଥନା କରି ଯାଇଅଛନ୍ତି । ଆମ୍ଭେମାନେ ତାଙ୍କର ଶେଷ ମନୋଭାବ ପ୍ରକାଶ କରିବାକୁ ଅକ୍ଷମ ମନେକରି ତାଙ୍କ ପତ୍ରିକାକୁ ନିମ୍ନେ ପ୍ରକାଶ କଲୁଁ ।

Angul
3rd April, 1894

My dear Madhoo,

In a better place and under better medical treatment I might perhaps have recovered, but here there appears to be no chance. I feel that I am gradually sinking and I fear I shall have no opportunity of seeing you again. As I said before it is the fever that is consuming me. So while I am able to hold a pen I write this to bid you farewell. My last request to you is to be a son to my good wife and a father to the children. See that Naba is somewhere provided and Bira receives good education.

Yours affectionately.
Sd. N.K. Das

ରାୟ ବାହାଦୁର ପ୍ରଥମରେ ଆମବାତ ରୋଗରେ ପୀଡ଼ିତ ହୋଇ ଜ୍ୱରରେ ଓ ଚିନ୍ତାରେ କ୍ରମଶଃ ଅବସନ୍ନ ହୋଇଗଲେ । ପରେ ସେ ରୋଗ ହୃଦୟ ଅଧିକାର କରନ୍ତେ ସେ ମୃତ୍ୟୁମୁଖରେ ପତିତ ହେଲେ । ପୀଡ଼ା ସମୟରେ ତାଙ୍କର ପରିବାରବର୍ଗ ସେଠାରେ ନିଯୁକ୍ତ ଥିଲେ କେବଳ ଜ୍ୟେଷ୍ଠପୁତ୍ର ସରକାରୀ କାର୍ଯ୍ୟରେ ସ୍ଥାନାନ୍ତରିତ ଥିବାରୁ ଓ ଛୁଟୀ ପାଇ ନ ପାରିବାରୁ ସେବା କାର୍ଯ୍ୟରେ ଯୋଗ ହେବାକୁ ଅସମର୍ଥ ହୋଇଥିଲେ । କିନ୍ତୁ କିଏ ଭାବିଥିଲା ଯେ ତାଙ୍କର ଅକାଳରେ କାଳ ହେବ ? ଅନୁଗୁଳ ଗଡ଼ରେ ଯେପରି ଚିକିତ୍ସା ହେବାର ସମ୍ଭାବନା ତାହା ହୋଇଥିଲା । କଟକରେ ଭଲ ଚିକିତ୍ସାର ଉପାୟ ଥିଲେ ସୁଦ୍ଧା କାଳବଶରୁ କଟକ ନଗରକୁ ଆସିବାର ଉଦ୍ୟମ ହେଉଥିବାର ଶୁଣିଲେ ତାଙ୍କର ଶରୀର ଅଧିକ ଅସୁସ୍ଥ ହେଉଥିଲା । ମୃତ୍ୟୁ ଦିବସ ପ୍ରାତଃ କାଳରେ ଗ୍ରହଣ ସପ୍ତାହ ଯୋଗୁଁ କଟକ ଯିବା ମାନସରେ ସର୍କ୍ୟୁଟ ହାଉସରୁ ତହସିଲଦାରବାବୁ ନାରାୟଣ ନାୟକଙ୍କ କୋଠିକୁ ପଶ୍ଚିମକୁ ଯାତ୍ରା କରିଥିଲେ । ସେଠାରେ ପ୍ରବେଶାନନ୍ତର ଜ୍ୱର ବୃଦ୍ଧି ହେବାରୁ କଟକକୁ ଯାଉଥିବା ଗାଡ଼ି ଆଦି ଫେରାଇ ଅଣା ହୋଇଥିଲା । ସେହି ଦିବସ ୪ଘଣ୍ଟା ସମୟକୁ ରାୟ ବାହାଦୁରଙ୍କ ପୀଡ଼ା ମାରାତ୍ମକ ହେବାର ଜଣା ଯାଇଥିଲା । ଚିକିତ୍ସା ଯଥାବିଧିରେ ହେଲେ ସୁଦ୍ଧା ବ୍ୟର୍ଥ ହୋଇଥିଲା । ରାତ୍ର ଶେଷ ପ୍ରହରକୁ ତାଙ୍କର ଏହି ଅଶୁଭ ସମ୍ବାଦ କ୍ରନ୍ଦନଧ୍ୱନି ସହିତ ଚାରିଆଡ଼େ ଉଛୁଳି ପଡ଼ିଲା । ରାୟ ବାହାଦୁର ମୃତ୍ୟୁ ପୂର୍ବକ୍ଷଣରେ ସମସ୍ତଙ୍କୁ ଡକାଇ ଦେଖିଥିଲେ ଓ ଈଶ୍ୱରଙ୍କ ନାମୋଚ୍ଚାରଣ ପୂର୍ବକ ଶେଷ ବିଦାୟ ଗ୍ରହଣ କରି ସ୍ୱର୍ଗଧାମକୁ ଗମନ କଲେ । ତାଙ୍କର କାର୍ଯ୍ୟରେ ଆବାଳବୃଦ୍ଧବନିତା ବାଦୀ ପ୍ରତିବାଦୀ ସମସ୍ତେ ସନ୍ତୁଷ୍ଟ ଥିଲେ । ପ୍ରବାଦ ଅଛି ଯେ ଯେଉଁ ଲୋକ ସମସ୍ତଙ୍କୁ ତୃପ୍ତ କରିବାକୁ ଚେଷ୍ଟା କରନ୍ତି ସେ କାହାରିକୁ ତୃପ୍ତ କରିପାରନ୍ତି ନାହିଁ କିନ୍ତୁ ଏ ପ୍ରବାଦର ବୈଲକ୍ଷଣ୍ୟ କେବଳ ଏହାଙ୍କଠାରେ ଦେଖାଯାଇଥିଲା । ତାଙ୍କର ଯଶ ଗୌରବ କେବଳ ଜନସାଧାରଣରେ ଆବଦ୍ଧ ଥିଲା ନାହିଁ । ଗବର୍ଣ୍ଣମେଣ୍ଟ ତାଙ୍କର ପ୍ରଭାବଶାଳୀ ବୁଦ୍ଧି ଶକ୍ତିରେ ସନ୍ତୁଷ୍ଟ ହୋଇ ତାଙ୍କୁ ଟ୨୦ଙ୍କା ବେତନର କିରାଣୀଗିରିରୁ ଡିପୋଟୀ କମିଶ୍ନର ପଦ ପର୍ଯ୍ୟନ୍ତ ଉନ୍ନତି କରାଇଥିଲେ ଓ ସମୟରେ ମୋଗଲବନ୍ଦୀ ଜିଲ୍ଲାର ମାଜିଷ୍ଟ୍ରେଟ୍ ପଦକୁ ଉନ୍ନତି କରାଇବେ ଏ ପ୍ରକାର ଆଶା କରିଥିଲେ । ତାଙ୍କର ମୃତ୍ୟୁରେ ଦେଶର ଓ ସରକାରଙ୍କର ବିଶେଷ କ୍ଷତି ହୋଇଅଛି । ଗବର୍ଣ୍ଣମେଣ୍ଟ ଏହାଙ୍କ ମୃତ୍ୟୁ ସମ୍ବାଦରେ ଅତୀବ ଦୁଃଖିତ । ଏହାଙ୍କ ମୃତ୍ୟୁ ସମ୍ବାଦରେ ଗବର୍ଣ୍ଣମେଣ୍ଟଙ୍କର ଯେ କେତେ କ୍ଷତି ହୋଇଅଛି ତାହା ତଦୀୟ ଦପ୍ତରର ପ୍ରଥମ ସେକ୍ରେଟାରୀ ଏଚ୍.ଜେ.ଏସ୍ କଟନ୍ ବାବୁ ମଧୁସୂଦନ ଦାସଙ୍କ ନିକଟକୁ ଲେଖିଥିବା ଶୋକପ୍ରକାଶ ପତ୍ରରୁ ପ୍ରକାଶ ପାଉଅଛି । ପାଠକଙ୍କ ଅବଗତି ନିମିତ୍ତ ତାହା ନିମ୍ନେ ପ୍ରକାଶ କଲୁଁ ।

Calcutta
11th April 1894

My Dear Mr Das.

It is with the greatest sorrow that I have just heard of the death of Ray Nandakishore Das Bahadur at Angul. I received from him a letter a few days ago in which he stated that he was ill and I wrote at once to the Commissioner asking him to suggest arrangements to meet the care. But all alas ! too late. His death is an immense loss to the service and to Orissa whose most distinguished representative he was. No Government servant ever devoted himself more faithfully to his work. I had always hoped that he would have been collector of one of the Mogalbandi districts during the latter years of his service and I am quite certain that he would have discharged the duties admirably. His career has been prematurely cut short and it may be said of Nandakishore if of any man that he sacrificed himself to the call of duty.

I hope you will convey to his family my sincere condolence for the irreparable loss they have sustained.

The whole province of Orissa will sympathize with them in their grief.

Sd. H.J.S. Cotton

ଦେଖୁଁ ୨ ରାୟ ବାହାଦୁରଙ୍କର ଶ୍ରାଦ୍ଧକାର୍ଯ୍ୟାଦି ସମ୍ପନ୍ନ ହୋଇ ଆଜକୁ ୧୭ ଦିନ ଚାଲିଲା । ଦିନ ଚାଲିଯାଉଅଛି ତେବେ କାର୍ଯ୍ୟ ଅମର ହୋଇଥାଏ । ଶ୍ରାଦ୍ଧକାର୍ଯ୍ୟାଦି ଯଥାବିଧିରେ ଓ ଯଥାସମାରୋହରେ ଗ୍ରାମଠାରେ ସମ୍ପନ୍ନ ହୋଇଥିଲା । ନ୍ୟୁନାଧିକ ତିନିସହସ୍ର ବ୍ରାହ୍ମଣ ଉପସ୍ଥିତ ହୋଇଥିଲେ । ପୁତ୍ର ପିତାଙ୍କ ଶ୍ରାଦ୍ଧକାର୍ଯ୍ୟ ସମ୍ପନ୍ନ କଲେ । ବର୍ତ୍ତମାନ ଆମ୍ଭମାନଙ୍କର କର୍ତ୍ତବ୍ୟ କାର୍ଯ୍ୟରେ ଅଗ୍ରସର ହେବାର ସମୟ ଉପସ୍ଥିତ । ରାୟବାହାଦୁର ଆମ୍ଭମାନଙ୍କର ଚିରଉପାସ୍ୟ ଦେବତା । ଅତଏବ ତାଙ୍କର ଏକ ଦେବମୂର୍ତ୍ତି ଓ ମନ୍ଦିର ସ୍ଥାପନର ଆବଶ୍ୟକ, ଆମ୍ଭମାନଙ୍କର ଏ କାର୍ଯ୍ୟରେ ଶୀଘ୍ର ବଦ୍ଧପରିକର ହେବା ଉଚିତ । ଯାହା ଥିଲା, ତାହା ହେଲା ଭାବିଲେ କି ହେବ ବର୍ତ୍ତମାନ ଯାହା କରିବାର କର୍ତ୍ତ୍ୟବ୍ୟ କାର୍ଯ୍ୟ ସେହିତା ଭାବିବା ଉଚିତ ହେଉଅଛି ।

# ସଂପାଦକ ସମୀପେଷୁ

## (ଉତ୍କଳଦୀପିକା, ୨୮ ଏପ୍ରିଲ୍ ୧୮୯୪)

**ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସଂପାଦକ ମହାଶୟ ସମୀପେଷୁ**

ମହାଶୟ !

ଯେଉଁ କ୍ଷଣଜନ୍ମା ମହାତ୍ମାଙ୍କ ପରଲୋକ ଗମନରେ ଆଜି ସମଗ୍ର ଉତ୍କଳ ଶୋକାକୁଳ, ତାହାଙ୍କ ମୃତ୍ୟୁରେ ଦୁଃଖ ପ୍ରକାଶ କରିବା ନିମିତ୍ତ ବିଗତ ଶନିବାର କଟକ ଟ୍ରେନିଂ ସ୍କୁଲ୍ ଗୃହରେ ତତ୍‌ସଂଲଗ୍ନ ଆଲୋଚନା ସଭାର ଯେଉଁ ବିଶେଷ ଅଧିବେଶନ ହୋଇଥିଲା ତାହାର କାର୍ଯ୍ୟାବଳୀର ଖଣ୍ଡିଏ ପ୍ରତିଲିପି ସଭ୍ୟଙ୍କର ନିର୍ଦ୍ଧାରଣ ଅନୁସାରେ, ଆପଣଙ୍କ ପତ୍ରିକାରେ ପ୍ରକାଶ କରିବା ନିମନ୍ତେ ପଠାଇଲୁ । ଅନୁଗ୍ରହ ପୂର୍ବକ ପତ୍ରିକାର ଏକ ପାର୍ଶ୍ୱରେ ଏହାକୁ ସ୍ଥାନଦାନ କରିବା ହେବେ ।

ସଭାସ୍ଥଳରେ ୪୦ ଜଣରୁ ଅଧିକ ସଭ୍ୟ ଉପସ୍ଥିତ ଥିଲେ । ସଭାପତି ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓ ମହୋଦୟ ଆସନ ଗ୍ରହଣ କରି ଏ ଅଧିବେଶନର ଉଦ୍ଦେଶ୍ୟ ସମ୍ବନ୍ଧରେ କହିଲେ କି ରାୟ ନନ୍ଦକିଶୋର ଦାସ ବାହାଦୁର ଆଉ ଇହ ସଂସାରରେ ନାହାନ୍ତି । ସ୍ୱର୍ଗୀୟ ରାୟ ବାହାଦୁରଙ୍କର ଆମ୍ଭମାନଙ୍କ ବିଦ୍ୟାଳୟ ବା ସଭା ସହିତ କୌଣସି ସଂପର୍କ ନ ଥିଲା । ତଥାପି ଆମ୍ଭେମାନେ ସମସ୍ତେ ଆଜି ତାଙ୍କରି ସକାଶେ ଦୁଃଖିତ କାହିଁକି ? ରାୟ ବାହାଦୁର ସାହିତ୍ୟ ସଂସାରରେ କିଛି ଖ୍ୟାତନାମା ନ ଥିଲେ, ଅର୍ଥାତ୍ ସେ କିଛି ପ୍ରସିଦ୍ଧ କବି ବା ଦାର୍ଶନିକ ନ ଥିଲେ । ସାହିତ୍ୟ ବା ଅନ୍ୟ କୌଣସି ବିଷୟରେ କୌଣସି ଗ୍ରନ୍ଥ ଲେଖି ଯାଇଅଛନ୍ତି ଏମନ୍ତ ନୁହେଁ । ତଥାପି ସେ ଜଣେ ମହାଜନ ଥିଲେ । ତାଙ୍କର ସାଂସାରିକ କର୍ତ୍ତବ୍ୟ ଜ୍ଞାନ ଯେପରି ଥିଲା, ସେପରି ଆଉ କାହାଠାରେ ଦେଖାଯାଏ ନାହିଁ । ସେ ଅତି ସହଜରେ ଜଟିଳ ବିଷୟର ମର୍ମ ଗ୍ରହଣ କରିପାରୁଥିଲେ । କ୍ରୋଧ କଅଣ ତାଙ୍କୁ ଜଣା ନ ଥିଲା । ସୌଜନ୍ୟ ତାହାଙ୍କଠାରେ ପୂର୍ଣ୍ଣମାତ୍ରାରେ ଥିଲା । ମୁଁ ତାହାଙ୍କୁ ପ୍ରାୟ ୨୮ ବର୍ଷ ହେଲା ଜାଣେ । ସେ ଯେଉଁ ସମୟରେ ପୁରୀରେ କୋଡ଼ିଏ ଟଙ୍କା ବେତନରେ ସାମାନ୍ୟ କିରାଣୀ କର୍ମ କରୁଥିଲେ, ସେ ସମୟରୁ ମୁଁ ତାହାଙ୍କୁ ଦେଖି ଆସୁଅଛି । ସମଗ୍ର ବିଷୟ ବିବେଚନା କଲେ ତାଙ୍କ ପରି ଆଉ ଜଣେ ଓଡ଼ିଶାରେ ଦେଖୁ ନାହିଁ । ସେ ଆପଣାର କାର୍ଯ୍ୟ ଦକ୍ଷତା ନିମନ୍ତେ ଗବର୍ଣ୍ଣମେଣ୍ଟଙ୍କଠାରେ ବିଶେଷରୂପେ ପରିଚିତ ଥିଲେ ଏବଂ ସେଥିନିମନ୍ତେ ସେ କୋଡ଼ିଏ ଟଙ୍କା ବେତନରୁ କ୍ରମେ୨ ଆଠଶହ ଟଙ୍କା ବେତନ ପର୍ଯ୍ୟନ୍ତ ଅବଶେଷରେ ଯେଉଁ ଉଚ୍ଚପଦ ପାଇଲେ, କୌଣସି ଓଡ଼ିଶାବାସୀ ଏ ପର୍ଯ୍ୟନ୍ତ ତାହା ପାଇ ନାହାନ୍ତି । ବଡ଼୨ ସଭ୍ୟ ଦେଶମାନଙ୍କରେ ଲୋକେ ମହାଜନମାନଙ୍କୁ ଭକ୍ତି କରିବାକୁ ଶିଖି ଅଛନ୍ତି । ଆମ୍ଭମାନଙ୍କର ମଧ୍ୟ ସେହି ଦେଶମାନଙ୍କର ଅନୁକରଣରେ ମହାଜନମାନଙ୍କ ପ୍ରତି

ଭକ୍ତି ଶିକ୍ଷା କରିବା ଉଚିତ । ଏହା ନ କଲେ ସେମାନଙ୍କ ପ୍ରତି ଆମ୍ଭମାନଙ୍କର କର୍ତ୍ତବ୍ୟର ତ୍ରୁଟି ହେବ । ମୁଁ ଦେଖୁଅଛି ଯେ ଆଜିକାଲି ଛାତ୍ରମାନଙ୍କର ଭକ୍ତି କିଛି ଊଣା ହୋଇଯାଇଅଛି । ପୂର୍ବେ ଛାତ୍ରମାନେ ଗୁରୁଜନ ପ୍ରଭୃତିଙ୍କୁ ଯେପରି ଭକ୍ତି କରୁଥିଲେ, ଆଜିକାଲି ଛାତ୍ରଜୀବନରେ ତାହା ଦେଖାଯାଉ ନାହିଁ କିମ୍ବା ସେହି ପରିମାଣରେ ଦେଖାଯାଉ ନାହିଁ । କିନ୍ତୁ ଏହା ଶୁଭ ଲକ୍ଷଣ ନୁହେଁ । ଯାହାଠାରେ ଯେପରି ଭକ୍ତି ପ୍ରୀତି ପ୍ରଭୃତି ଅର୍ପଣ କରିବା କର୍ତ୍ତବ୍ୟ ଆମ୍ଭମାନଙ୍କର ଉଚିତ ଯେ ସେମାନଙ୍କଠାରେ ସେହିପରି ଅର୍ପଣ କରିବୁଁ । ଛାତ୍ରମାନଙ୍କର ଉଚିତ ଯେ ସେମାନେ ବେଳହୁଁ ତାହା କରିବାକୁ ଶିକ୍ଷା କରିବେ । ସ୍ୱର୍ଗୀୟ ରାୟ ବାହାଦୁର ଆମ୍ଭମାନଙ୍କର ଭକ୍ତିର ପାତ୍ର । ତାହାଙ୍କ ଜୀବନରୁ ଗୋଟିଏ ମହତ୍ ଶିକ୍ଷା ଲାଭ କରାଯାଏ, ତାହା ସୌଜନ୍ୟ । ରାୟ ବାହାଦୁର ସୌଜନ୍ୟର ଆଧାର ଥିଲେ । ତାହାଙ୍କ ମୃତ୍ୟୁରେ ଉତ୍କଳର ଯେଉଁ କ୍ଷତି ହୋଇଅଛି, ତାହା ଉପଲବ୍ଧି କରି ସେଥିନିମନ୍ତେ ଦୁଃଖ ପ୍ରକାଶ କରିବା ଆଜି ଆମ୍ଭମାନଙ୍କର ଏହି ଅଧିବେଶନର କର୍ତ୍ତବ୍ୟ ।

୨. ତତ୍ପରେ ବାବୁ ବିଶ୍ୱନାଥ କର କହିଲେ କି- ସ୍ୱର୍ଗୀୟ ରାୟ ନନ୍ଦକିଶୋର ଦାସ ବାହାଦୁର ଉତ୍କଳର ସମସ୍ତଙ୍କଠାରେ ସୁପରିଚିତ । ଉତ୍କଳର ପ୍ରତ୍ୟେକ ଗୃହରେ ତାଙ୍କୁ ନ ଜାଣେ ଏପରି କେହି ନାହିଁ । ଆମ୍ଭେମାନେ ଆଜି ସମବେତଭାବରେ ଆମ୍ଭମାନଙ୍କର ଶୋକପ୍ରକାଶ କରିବା ନିମନ୍ତେ ଏଠାରେ ଏକତ୍ରିତ ହୋଇଅଛୁଁ, କିନ୍ତୁ ଯେଉଁ ସମୟରେ ପ୍ରଥମେ ଏହି ନଗରରେ ତାଙ୍କର ଦାରୁଣ ମୃତ୍ୟୁ ସମ୍ବାଦ ପ୍ରଚାରିତ ହେଲା, ସେହି ସମୟରୁ ଆମମାନଙ୍କର ପ୍ରତ୍ୟେକଙ୍କ ମନରେ ଶୋକ ଜାତ ହୋଇଅଛି । ତାଙ୍କ ବିୟୋଗରେ କେବଳ ଯେ ତାଙ୍କ ପରିବାରବର୍ଗ ଶୋକାକୁଳ ଏମନ୍ତ ନୁହେଁ, ଉତ୍କଳର ପ୍ରତ୍ୟେକ ନରନାରୀ ଉତ୍କଳର ପ୍ରତ୍ୟେକ ହୃଦୟ ସେହି ଶୋକ ଅନୁଭବ କରୁଅଛି । ରାୟ ବାହାଦୁର ଉତ୍କଳର ଏକ ସୁପୁତ୍ର ଥିଲେ । ଅନ୍ୟାନ୍ୟ ଜାତିର କାର୍ଯ୍ୟପ୍ରଣାଳୀରେ ଦେଖାଯାଏ ଯେ ସେମାନଙ୍କ ଦେଶର ସୁପୁତ୍ରମାନଙ୍କୁ ସେମାନେ ଆଦର କରିବାକୁ ଶିଖି ଅଛନ୍ତି । ଆମ୍ଭମାନଙ୍କର ଉଚିତ ଯେ ଆମ୍ଭେମାନେ ଏହି ଉତ୍କଳଭୂମିର ସୁପୁତ୍ରମାନଙ୍କୁ ଆଦର କରିବାକୁ ଶିଖିବା ।

ଏହା କହି ବାବୁ ବିଶ୍ୱନାଥ କର ନିମ୍ନଲିଖିତମତେ ପ୍ରଥମ ନିର୍ଦ୍ଧାରଣ ସଭାରେ ଉପସ୍ଥାପିତ କଲେ ।

୩. ରାୟ ନନ୍ଦକିଶୋର ଦାସ ବାହାଦୁରଙ୍କ ଅକାଳମୃତ୍ୟୁରେ ଉତ୍କଳର ଯେଉଁ ଅପ୍ରତିକାର୍ଯ୍ୟକ୍ଷତି ହୋଇଛି, ତାହା ଉପଲବ୍ଧି କରି ଏହି ସଭା ଦୁଃଖ ପ୍ରକାଶ କରୁଅଛନ୍ତି ଏବଂ ତାଙ୍କ ପରିବାରଙ୍କୁ ଦୁଃଖ ପ୍ରକାଶକ ପତ୍ର ପ୍ରେରଣ କରିବାନିମନ୍ତେ ନିର୍ଦ୍ଧାରଣ କରୁଅଛନ୍ତି ।

୪. ବାବୁ ଚନ୍ଦ୍ରମୋହନ ମହାରଣା ଏହି ପ୍ରସ୍ତାବକୁ ପୋଷକତା କଲେ ।

୫. ଅନନ୍ତର ବାବୁ ଗଦାଧର ତ୍ରିପାଠୀ ମହାଶୟ ନିମ୍ନଲିଖିତମତେ ଦ୍ୱିତୀୟ ନିର୍ଦ୍ଧାରଣ ସଭାରେ ଉପସ୍ଥିତ କଲେ- ରାୟ ବାହାଦୁରଙ୍କର ନାମ ସ୍ମରଣୀୟ କରିବାନିମିତ୍ତ କୀର୍ତ୍ତିସ୍ଥାପନାର୍ଥ

କୌଣସି ସାଧାରଣ ଉଦ୍ୟମ ଅନୁଷ୍ଠିତ ହେଲେ, ଏଥି ସହ ସେଥିସର୍ବ ଉଦ୍ୟମ ସହିତ ସହଯୋଗିତା କରିବା ନିମିତ୍ତ ପ୍ରସ୍ତୁତ ଅଛନ୍ତି । ଏହି ନିମ୍ନଲିଖିତ ସଭ୍ୟମାନଙ୍କୁ ସାଧାରଣ ଉଦ୍ୟମ ସହିତ ଯୋଗଦାନ ନିମିତ୍ତ ଆପଣାର ପ୍ରତିନିଧି ନିଯୁକ୍ତ କରୁଅଛନ୍ତି ।

ଗଦାଧର ତ୍ରିପାଠୀ ବାବୁ ହରେକୃଷ୍ଣ ଶତପଥୀ

ବିଶ୍ୱନାଥ କର ବାବୁ ଚନ୍ଦ୍ରମୋହନ ମହାରଣା

୬. ବାବୁ ହରେକୃଷ୍ଣ ଶତପଥୀ ଏହି ନିର୍ଦ୍ଧାରଣର ପୋଷକତା କରି କହିଲେ କି- ରାୟ ନନ୍ଦକିଶୋର ଦାସ ବାହାଦୁର ଆମ୍ଭମାନଙ୍କଠାରେ ସୁପରିଚିତ ଥିଲେ । ସେ ପୁରୁଷୋତ୍ତମରେ ପୁତ୍ର ଥିଲେ ପୁଣି ସେହିଠାରେ କିରାଣୀ ହେଲେ । ରାବେନ୍‌ସା ସାହେବ ଗବର୍ଣ୍ଣମେଣ୍ଟଙ୍କୁ ରିପୋର୍ଟ କରାଇ ତାଙ୍କୁ ଡେପୁଟୀ କରାଇଲେ । ସେ କର୍ମ ସେ କିଛିଦିନ କଲା ଉତ୍ତାରୁ ସେ ସ୍କୁଲ୍ ସମୂହର ଜଏଣ୍ଟ ଇନ୍‌ସ୍ପେକ୍ଟର ହେଲେ । ନିଜେ ଏଣ୍ଟ୍ରାନ୍‌ସ ପାସ୍ କରି (ବାଲେଶ୍ୱର ଓ ପୁରୀ) ଜିଲ୍ଲା ସ୍କୁଲ୍‌ର ଭାର ପାଇଥିଲେ । କେହି୨ ମନେ କରିପାରନ୍ତି, ଡେପୁଟୀଙ୍କ ପୁଅ ଥିଲେ ଡେପୁଟୀ ହେଲେ ଏଥିରେ ବାହାଦୁରୀ କ'ଣ ? ତାହା ନୁହେଁ, ଯୋଗ୍ୟତାରୁ ସେ ତାଙ୍କ ପଦ ପାଇଥିଲେ । ତାଙ୍କର ଗୋଟିଏ ମହତ୍‌ଗୁଣ ଏହି ଥିଲା ଯେ କୋଡ଼ିଏ ଟଙ୍କା ବେତନ ପାଇ ଯେପରି ଥିଲେ ଡେପୁଟୀ ହୋଇ ମଧ୍ୟ ତାଙ୍କ ମନ ସେହିପରି ଥିଲା । ତାଙ୍କଠାରେ ଗର୍ବ ଆଦୌ ନଥିଲା । ସମସ୍ତେ ତାଙ୍କରି ପରି ହେବାକୁ ଶିକ୍ଷା କର ଅବଶ୍ୟ ମାନ୍ୟ, ଗଣ୍ୟ, ଧନ୍ୟ ଓ ପ୍ରଶଂସନୀୟ ହେବ ।

୭. ତଦନନ୍ତର ବାବୁ ଶ୍ୟାମସୁନ୍ଦର ନନ୍ଦ କହିଲେ କି- ମହାକବି କାଳିଦାସ ଏକ ସ୍ଥାନରେ ଲେଖିଛନ୍ତି, "ନ ରତ୍ନମନ୍ୱିଷ୍ୟତେ ମୃଗ୍ୟତେ ହି ରତ୍ନ" ଅର୍ଥାତ୍ ରତ୍ନ କାହାରି ଅନ୍ୱେଷଣ କରେ ନା, ରତ୍ନର ସମସ୍ତେ ଅନ୍ୱେଷଣ କରନ୍ତି । ସ୍ୱର୍ଗୀୟ ରାୟ ନନ୍ଦକିଶୋର ଦାସ ବାହାଦୁର ଏହାର ଉଦାହରଣ । ଗବର୍ଣ୍ଣମେଣ୍ଟ ଏହାଙ୍କର ଗୁଣ ଦେଖି ଏହାଙ୍କର ଉତ୍ତରୋତ୍ତର ଉନ୍ନତି ବିଧାନ କରିଥିଲେ । ସାମାନ୍ୟ ପଦରୁ ଶୀର୍ଷ ସ୍ଥାନରେ ବସାଇଥିଲେ । କେହି କହିପାରନ୍ତି ରାୟ ବାହାଦୁର ଆମ୍ଭମାନଙ୍କର କଅଣ ଉପକାର କରିଥିଲେ ଯେ ଆମ୍ଭେମାନେ ତାହାଙ୍କଠାରେ କୃତଜ୍ଞ ରହିବୁଁ । ଜୀବିତ ନନ୍ଦକିଶୋର ନାହାନ୍ତି । ସ୍ୱର୍ଗୀୟ ନନ୍ଦକିଶୋର ପ୍ରତ୍ୟକ୍ଷ ଭାବରେ ଆମ୍ଭମାନଙ୍କର ଉପକାର କରି ନ ପାରିଲେ ସୁଦ୍ଧା ପରୋକ୍ଷ ଭାବରେ କରୁଅଛନ୍ତି । ଯେତେବେଳେ କାହାର ଉନ୍ନତି ନ ହେବାରୁ ବା ଆଶାନୁରୂପ ଉନ୍ନତି ନ ହେବାରୁ ହତାଶ ହୋଇପଡ଼ିବୁଁ, ସେତେବେଳେ ସ୍ୱର୍ଗୀୟ ରାୟ ବାହାଦୁରଙ୍କୁ ସ୍ମରଣ କଲେ ମନରେ ଏହି ଭାବ ଜାତ ହେବ ଯେ ମନୁଷ୍ୟ ନିଜର ଭାଗ୍ୟର ବିଧାତା, ନିଜର ଉନ୍ନତି କାମନା ନିଜେ କଲେ ଅବଶ୍ୟ ଉନ୍ନତି ହେବ । ରାୟ ବାହାଦୁର ଚେଷ୍ଟାକରିବାରୁ ସାମାନ୍ୟ ପଦରୁ ଉଚ୍ଚକୁ ଉଠିଥିଲେ । ରାୟ ବାହାଦୁର ଆମମାନଙ୍କର ଓଡ଼ିଶାର କାହିଁକି ସମସ୍ତ ପରିଚିତ ଲୋକମାନଙ୍କର ବନ୍ଧୁ ଥିଲେ । ବନ୍ଧୁର ଆନନ୍ଦରେ ହୃଦୟ ଆନନ୍ଦିତ ଓ

ଦୁଃଖରେ ଦୁଃଖିତ ହୁଏ । ତାହାଙ୍କର ମୃତ୍ୟୁ ସମ୍ବାଦରେ ଯେତେବେଳେ ସାନ ବଡ଼ ସମସ୍ତେ ହାହାକାର କରୁଅଛନ୍ତି ସେତେବେଳେ ବୁଝିବାକୁ ହେବ, ସେ ବନ୍ଧୁଭାବରେ ଆମ୍ଭମାନଙ୍କୁ ଦେଖୁ ନଥିଲେ ଏପରି ହୁଅନ୍ତା ନାହିଁ । ପ୍ରତ୍ୟେକ ସଭ୍ୟଜାତିର ପ୍ରଧାନ ଲକ୍ଷଣ ମୃତ ପ୍ରତି ସମ୍ମାନ ପ୍ରଦର୍ଶନ । ଏ ବିଷୟରେ ଆମ୍ଭମାନଙ୍କ ଦେଶ ଅପେକ୍ଷା ପାଶ୍ଚାତ୍ୟ ଦେଶ ଶ୍ରେଷ୍ଠ । ଅଳ୍ପ ଦିନ ତଳେ କୋଶଥ ନାମକ ହଙ୍ଗେରୀୟ ସ୍ୱଦେଶ ହିତୈଷୀଙ୍କ ମୃତ୍ୟୁ ହେଲା । ସହସ୍ର ସହସ୍ର ଲୋକ ଶବ ସହିତରେ ଶ୍ମଶାନକୁ ଯାଇଥିଲେ । ପୁଷ୍ପାଦିଦ୍ୱାରା ସହସ୍ର ଲୋକ ତାଙ୍କ ସମାଧିକୁ ପୂଜା କରୁଅଛନ୍ତି । ଆମ୍ଭମାନଙ୍କର ଉଚିତ ସ୍ୱର୍ଗୀୟ ରାୟ ନନ୍ଦକିଶୋର ବାହାଦୁର ଯେପରି ଆମ୍ଭମାନଙ୍କ ହୃଦୟରେ ଜାଗରୁକ ରହନ୍ତି ତାହାର ବିଧାନ କରିବା । ଏହା କହି ବାବୁ ଶ୍ୟାମସୁନ୍ଦର ନନ୍ଦ ନିମ୍ନଲିଖିତମତେ ତୃତୀୟ ନିର୍ଦ୍ଧାରଣ ସଭାରେ ଉପସ୍ଥାପିତ କଲେ ।

୮. ଏହି ସଭାର ଏହି ବିଶେଷ ଅଧିବେଶନର କାର୍ଯ୍ୟାବଳୀର ପ୍ରତିଲିପି ଖଣ୍ଡିଏ କଟକ, ସମ୍ବଲପୁର ଓ ବାଲେଶ୍ୱରର ସମ୍ବାଦପତ୍ରମାନଙ୍କୁ ପ୍ରେରଣ କରାଯାଉ ।

୯. ବାବୁ ଜଫରଚନ୍ଦ୍ର ପାଲିତ୍ ଏହି ନିର୍ଦ୍ଧାରଣର ପୋଷକତା କଲେ ।

୧୦. ପରିଶେଷରେ ବାବୁ ଚନ୍ଦ୍ରମୋହନ ମହାରଣା ନିମ୍ନଲିଖିତମତେ ଚତୁର୍ଥ ନିର୍ଦ୍ଧାରଣ ସଭାରେ ଉପସ୍ଥାପିତ କଲେ-

ସଭାପକ୍ଷରୁ ସଭାପତି ମହୋଦୟଙ୍କୁ ମୁଁ ସଭାର ଧନ୍ୟବାଦ ଅର୍ପଣ କରୁଅଛି ।

୧୧. ବାବୁ ବିଶ୍ୱନାଥ କର ଏହି ନିର୍ଦ୍ଧାରଣର ପୋଷକତା କଲେ ।

କଟକ
୧୮.୪.୧୮୯୪

ଶ୍ରୀ ଚନ୍ଦ୍ରମୋହନ ମହାରଣା
ଆଲୋଚନା ସଭାର ସଂପାଦକ

# ସ୍ମୃତି ସଭା

## (ଉତ୍କଳଦୀପିକା, ୫ ମେ, ୧୮୯୪)

ପରଲୋକଗତ ରାୟ ନନ୍ଦକିଶୋର ଦାସ ବାହାଦୁରଙ୍କ ପରିବାର ବର୍ଗଙ୍କୁ ସାନ୍ତ୍ୱନା ଦେବା ନିମନ୍ତେ ଓ ମୃତ ମହାତ୍ମାଙ୍କର ନାମ ଚିରସ୍ମରଣୀୟ କରିବାର ଉପାୟ ବିଧାନ କରିବା ନିମନ୍ତେ ଗତ ଶନିବାର ରେଭେନ୍‌ସା କଲେଜର ସଦସ୍ୟମାନେ ଗୋଟିଏ ସଭା କରିଥିଲେ । ବାବୁ ମଧୁସୂଦନ ଦାସ ସଭାପତିପଦରେ ବରିତ ହୋଇ ରାୟ ବାହାଦୁରଙ୍କର ମାହାତ୍ମ୍ୟ ବର୍ଣ୍ଣନ କରିଥିଲେ । ପ୍ରୟୋଜନୀୟ ନିର୍ଦ୍ଧାରଣମାନ ଆଗତ ଓ ଅନୁମୋଦିତ ହେଲା ପରେ ସଭା ଭଙ୍ଗ ହୋଇଥିଲା ।

# ଶେଷ ସମ୍ବାଦ

*ମୃତ୍ୟୁଲେଖ, ଶୋକସଭା, ସ୍ମୃତିଚାରଣ, ଶୋକପ୍ରସ୍ତାବ ଆଦି ମଧ୍ୟରେ ସେଦିନ ଶେଷ ହୋଇଥିଲା ନନ୍ଦକିଶୋର ଦାସଙ୍କର ଗୁଣକୀର୍ତ୍ତନ । କିନ୍ତୁ ସେତିକିରେ ସବୁକିଛିର ଶେଷ ହୋଇନଥିଲା । ପରବର୍ତ୍ତୀ ସମୟରେ ଯେତେବେଳେ ବି ଓଡ଼ିଶାର ଶିକ୍ଷା କ୍ଷେତ୍ରରେ କୌଣସି ଅସଙ୍ଗତି ଦେଖା ଦେଉଥିଲା, ସ୍ମରଣ କରାଯାଉଥିଲା ନନ୍ଦକିଶୋରଙ୍କୁ । ଏମିତି ଏକ ଘଟଣା ଥିଲା ଓଡ଼ିଶାର ଶିକ୍ଷା ବିଭାଗରୁ ରାୟବାହାଦୁର ରାଧାନାଥ ରାୟଙ୍କ ବଦଳି । 'ସମ୍ବଲପୁର ହିତୈଷିଣୀ' (ଭାଗ-୧୨, ସଂଖ୍ୟା-୩, ୨୩ ମେ ୧୯୦୦) ପୃଷ୍ଠାରୁ ନିମ୍ନରେ ପ୍ରଦତ୍ତ ତାହାର ପ୍ରାସଙ୍ଗିକ ଉଦ୍ଧୃତି ଏ ପ୍ରସଙ୍ଗରେ ଉଲ୍ଲେଖନୀୟ ।*

*–ସଂକଳକ*

# ଓଡ଼ିଶାର ସ୍କୁଲ ଇନସ୍ପେକ୍‌ଟର ପଦ

"ଅଯତ୍ନଲବ୍ଧ ଦୁର୍ମୂଲ୍ୟ ବସ୍ତୁ ପାଖରେ ଥିବା ପର୍ଯ୍ୟନ୍ତ ମନୁଷ୍ୟ ଅନେକ ସମୟରେ ତାହାର ମୂଲ୍ୟ ବୁଝିପାରେ ନାହିଁ । ବସ୍ତୁଟି ଅନ୍ତରିତ ହେଲେ ସେ ହାହାକାର କରେ, ଚତୁର୍ଦ୍ଦିଗ ଶୂନ୍ୟ ଦେଖେ । ବର୍ତ୍ତମାନ ଓଡ଼ିଶାର ଶିକ୍ଷା ବିଭାଗରେ ଏହି ଦଶା ଘଟିଅଛି । ମାନନୀୟ ରାୟ ରାଧାନାଥ ରାୟ ବାହାଦୁର ମହୋଦୟଙ୍କ ବଦଳୀରେ ଓଡ଼ିଶାର ଶିକ୍ଷାବିଭାଗ ଯେ ଅତ୍ୟନ୍ତ କ୍ଷତିଗ୍ରସ୍ତ ହୋଇଛି ଏହା ସମସ୍ତେ ସ୍ୱୀକାର କରିବେ । * * * ଯେତେବେଳେ ଶ୍ରୀଯୁକ୍ତ ଏଜର ସାହେବ ଜଏଣ୍ଟ୍ ଇନ୍‌ସ୍ପେକ୍ଟର ପଦରୁ ଅପସାରିତ ହେଲେ, ସେତେବେଳେ ଓଡ଼ିଶାର ଶିକ୍ଷା ବିଭାଗରେ ଉପଯୁକ୍ତ ବ୍ୟକ୍ତିର ଅଭାବ ଲକ୍ଷିତ ହେବାରୁ ପରଲୋକଗତ ରାୟ ନନ୍ଦକିଶୋର ଦାସ ବାହାଦୁରଙ୍କୁ ଅନ୍ୟ ବିଭାଗରୁ ଆଣି ଉକ୍ତ ପଦରେ ନିଯୁକ୍ତ କରିବାକୁ ହୋଇଥିଲା । ସେତେବେଳେ କ'ଣ ବଙ୍ଗପ୍ରଦେଶରେ ଶିକ୍ଷାବିଭାଗରେ ସାହେବ ବା ବଙ୍ଗାଳୀ ନଥିଲେ ? ସେମାନଙ୍କ ମଧ୍ୟରୁ କାହାରିକି ଆଣିଥିଲେ ଚଳିନଥାନ୍ତା ? ନା, ଗବର୍ଣ୍ଣମେଣ୍ଟ ଓଡ଼ିଶା ପ୍ରତି ଗୋଟିଏ ବିଶେଷ ବିଧିନିର୍ଦ୍ଦେଶ କରିଥିବାରୁ ତାହା କଲେ ନାହିଁ । ରାୟ ରାଧାନାଥଙ୍କ ନିଯୁକ୍ତି ସମୟରେ ମଧ୍ୟ ସେହି ବିଧି ପ୍ରତି ଲକ୍ଷ୍ୟ ରଖି କାର୍ଯ୍ୟ କରାଯାଇଥିଲା । * * * ଗବର୍ଣ୍ଣମେଣ୍ଟ ଯେଉଁ କାରଣରୁ ରାୟ ନନ୍ଦକିଶୋର ଏବଂ ରାୟ ରାଧାନାଥଙ୍କ ନିଯୁକ୍ତି ସମୟରେ ବିଶେଷ ବିଧି ଅନୁସରଣ କରିଥିଲେ, ବର୍ତ୍ତମାନ ମଧ୍ୟ ସେହି କାରଣମାନ ବିଦ୍ୟମାନ । ତେବେ ସେହି ବିଶେଷ ବିଧି ଅନୁସରଣ ନକରିବେ କାହିଁକି ? * * * ଏ ଅବସ୍ଥାରେ, ଜଣେ ଉତ୍କଳ ଭାଷା ଓ ଓଡ଼ିଆ ଚରିତ୍ରରେ ଅଭିଜ୍ଞ ବ୍ୟକ୍ତିଙ୍କୁ ଓଡ଼ିଶାର ଶିକ୍ଷା ବିଭାଗର ଶୀର୍ଷ ସ୍ଥାନରେ ନିଯୁକ୍ତ କରିବା ଏକାନ୍ତ ବାଞ୍ଛନୀୟ ।''

ooo

*ଭୁବନେଶ୍ୱରର 'ଶିକ୍ଷାସନ୍ଧାନ' ପକ୍ଷରୁ ୨୦୦୫ରେ ପ୍ରକାଶିତ ଆତ୍ମଜୀବନୀ 'ଅମୃତ ଅନୁଭବ'ରେ ନିଜର 'ମାମୁ ଘର' କଥାକୁ ବେଶ୍ ଅନ୍ତରଙ୍ଗ ଭାବରେ ବର୍ଣ୍ଣନା କରିଛନ୍ତି ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ସମାଜସେବୀ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା । ପୁସ୍ତକଟି ୨୦୦୬ ମସିହାର ସମ୍ମାନଜନକ 'ଶାରଳା ପୁରସ୍କାର' ବି ପାଇଛି । ସେହି ଅମୂଲ୍ୟ ଆତ୍ମଜୀବନୀରେ ଅଶୀତିପର ଅନ୍ନପୂର୍ଣ୍ଣା କହିଛନ୍ତି ତାଙ୍କ ମାମୁଘର କଥା ତଥା 'ବୋଉର ଅଜା- କେକେବାପା' ନନ୍ଦକିଶୋର ଦାସଙ୍କ କଥା :*

# ମାମୁଘର: ଏକ ଅମୃତାନୁଭବ

**ଅନ୍ନପୂର୍ଣ୍ଣା ମହାରଣା**

ଦିନେ ଭୁବନେଶ୍ୱରରେ ସହିଦନଗର ବାଟେ ଯାଉ ଯାଉ ବାଟରେ ଗୋଟାଏ ବିଭାଘରର ଆୟୋଜନ ଦେଖିଲି । ଗୋଟାଏ ବସ୍ତ୍ର ତୋରଣ ତିଆରି ହୋଇ ସେଥିରେ କିଏ କାହାକୁ ବିଭା ହେଉଛି, ତାହା ଇଂରାଜୀରେ ଲେଖା ହୋଇଛି । ସଡ଼କ ଦୁଇପଟେ ବନାତ, ମୁଣ୍ଡ ଉପରେ ଶାମିଆନା, ସଡ଼କ କଡ଼ରେ ଧାଡ଼ି ଧାଡ଼ି ଟିଣ ଚଉକି । ଆଉ ଟିକିଏ ଆଗେଇ ଗଲାରୁ ଦେଖିଲି ସେ ବସ୍ତ୍ରନଗରୀରେ ଗୋଟାଏ ବିରାଟ ଚଉପାଢ଼ୀ ପରି ଘରେ ଲୋକ ଭୋଜି ଖାଉଛନ୍ତି । ଖୁବ୍ ହଟ୍ଟଗୋଳ ହେଉଛି ।

ଆଉ ଟିକିଏ ଆଗେଇ ଗଲା ପରେ ଦେଖିଲି, ପଛପଟୁ ଦୁଇଜଣ ରିକ୍ସାବାଲା ଆସିଲେ । ରିକ୍ସାରେ ଆରୋହୀ ନାହାନ୍ତି । ଜଣେ କହିଲେ, "ଏଠି କ'ଣ ହେଉଛି କିରେ ?" ଆଉ ଜଣକ ଉତ୍ତର ଦେଲେ, "ବଡ଼ଲୋକଙ୍କ ବିଭାଘର ଭୋଜିଭାତ ।" ପ୍ରଥମ ଜଣକ କହିଲେ, "ନାଟ ତାମସା ଭଲା କରେଇ ଥାନ୍ତେ ? ଗଲା ଆଇଲା ଶହ ଶହ ଲୋକ ଦେଖିଥାନ୍ତେ । ସାଇ ପଡ଼ିଶାକୁ ଡାକି ଗୁଡ଼ାଏ ଗୁଡ଼ାଏ ଖାଇବାକୁ ଦେଇ ବିଦା କରିବାରେ କି ବିଭାଘର ।

ଦୁହେଁ ନିଜ ବାଟରେ ଗଲେ । ମୁଁ ସତୁରି ବର୍ଷ ପଛକୁ ଫେରିଗଲି । ମାମୁଘର ମନେ ପଡ଼ିଗଲା । ଆମ ମାମୁଘରେ ବିଭାଘର, ପୁଅ ଏକୋଇଶିଆ ହେଲେ ମୋହନ ଗୋସେଇଁ ଥିଏଟର, ବାରବାଟିଆ ସୋମନାଥ ମହାପାତ୍ରଙ୍କ ଗୋଟିପିଲା ନାଟ, ପଂଝାନାଟ ହୁଏ । ଅନ୍ତଃପୁର ଓ ବୈଠକଖାନା ମଝିରେ ରଙ୍ଗମଞ୍ଚ ହୁଏ । ବାରଣ୍ଡାରେ ଚିକ ଟଣା ହୋଇ ଘରର ମାଇଁ, ମାଉସୀ ଓ ନିମନ୍ତ୍ରିତ ଭଦ୍ରମହିଳାମାନେ ବସନ୍ତି । ବୟୋବୃଦ୍ଧମାନଙ୍କ ପାଇଁ ବାରଣ୍ଡାରେ ଶତରଞ୍ଜି ଉପରେ ଗଦି ପଡ଼ିଥାଏ । ସେମାନେ ତକିଆକୁ ଆଉଜି ବସନ୍ତି । ବାକି ସମସ୍ତଙ୍କ ପାଇଁ ସତରଞ୍ଜି ବ୍ୟବସ୍ଥା । ବିଜୁଳି ବତି ନଥାଏ । ୧୦/୧୨ଟା ପଞ୍ଚଲାଇଟ୍ ଜଳୁଥାଏ । ଲୋକ ଆଟପଟାଳି ଭାଙ୍ଗନ୍ତି ।

ମୋ' ବୋଉର ସହୋଦର ଭାଇ ନଥିଲେ । ଅଜା ଶାଳକଙ୍କ ପୁତ୍ରକୁ ପୁଅ କରିଥିଲେ । ସେ ଆମ 'ମାମୁ' । କିନ୍ତୁ ବୋଉର ମାମୁଘରକୁ ଆମେ ମାମୁଘର ବୋଲି ଜାଣୁ । ଆମେ ଜନ୍ମିବା ଆଗରୁ ଆମ ଅଜା ଜେଜେଙ୍କର କାଳ ହୋଇ ଯାଇଥିଲା । ସେଥିପାଇଁ ବୋଉର ମାମୁପୁଅ ଭାଇମାନେ ହିଁ ଆମର ମାମୁ ।

ମାମୁଘର ମାହାଙ୍ଗା ଥାନାର କୁମୁଡ଼ା ଜୟପୁର ଗାଁରେ । କିନ୍ତୁ ଆମେ ଜନ୍ମ ହେଲାବେଳକୁ ସେମାନେ ତିନିପୁରୁଷ ହେଲା କଟକର ବାଙ୍କାବଜାରରେ ବସବାସ କଲେଣି । ବୋଉ କହେ, ତା' ଅଜାଙ୍କ ନାଆଁ ନନ୍ଦକିଶୋର ଦାସ, ଆଈଙ୍କ ନାଆଁ ଲାବଣ୍ୟବତୀ । ନନ୍ଦକିଶୋରଙ୍କୁ ଆମେ ଦେଖିନୁ । ଆଈଙ୍କୁ, ଜେଜେମାଙ୍କୁ ଦେଖିଛୁ । ଗୋରୀ, ତନୁପାତଳୀ ବୁଢ଼ୀଟିଏ; ସପ ଉପରେ କାନ୍ଥକୁ ଆଉଜି ବସିଥାନ୍ତି । ପାଟିତୁଣ୍ଡ ନାହିଁ । କେବଳ ଇଙ୍ଗିତରେ ଘରର ସବୁ ବ୍ୟବସ୍ଥା ନିୟନ୍ତ୍ରଣ କରନ୍ତି । ଗାଈ କେତେ କ୍ଷୀର ଦେଲେ ଭୋଳୀ କହିଯାଏ ।

ହତାର ଡାହାଣ ପଟକୁ ସଡ଼କକୁ ଲାଗି ଧାଡ଼ିଏ ଏକତାଲା ଘର । ଗୋଟାଏ ଘରେ ତହସିଲଦାର ବସି କଣ ସବୁ ନଥିପତ୍ର ଘାଣ୍ଟନ୍ତି (ମାମୁ ଘରେ ଗୁମାସ୍ତାଙ୍କୁ ତହସିଲଦାର ଡକାଯାଏ) । ତା' ପାଖ ଘରଟାରେ ଜଣେ 'ମାଷ୍ଟ୍ରେ' ବସି ଘରର ସାନ ପିଲାଙ୍କୁ ପଢ଼ାନ୍ତି । ସେ ଖଞ୍ଜାଟାରେ ସବୁବେଳେ ଲୋକ ଗହଳି । ତା' ପାଖକୁ ଶିବ ମନ୍ଦିର । ମନ୍ଦିରହତା ଦୁଧ, ଲହୁଣୀ, ବେଲପତ୍ର ଓ ଚମ୍ପାଫୁଲର ବାସନା ମିଶା, ଦେଉଳିଆ ବାସନା– ଯେଉଁଟା ସବୁ ଦେବମନ୍ଦିରରେ ଥାଏ । ତା' ସାଙ୍ଗକୁ ଅର୍କ, ଦୁଦୁରା, ଗଇସ ଫୁଲର ବାସନା । ଲୁଚୁକାଳି ଖେଳ ଉପଲକ୍ଷେ ଆମେ ଅନେକ ସମୟ ମନ୍ଦିର ହତାରେ ଥିବା ହଲପରି ଲମ୍ୱା ଘରଟାରେ ଲୁଚୁ । ଘରର ବୟୋବୃଦ୍ଧାମାନେ କାର୍ତ୍ତିକ, ମାଘ, ବୈଶାଖ ମାସରେ ହବିଷ୍ୟ କଲାବେଳେ ମନ୍ଦିରକୁ ଯାଇ ହବିଷ୍ୟାନ୍ନ ଖାଆନ୍ତି । କାପ୍ତାକାପ୍ତି ପତ୍ରଟା ଆମ ପାଇଁ ସଂରକ୍ଷିତ ଥାଏ ।

ଶ୍ରୀ ଗଦେଇ ନନ୍ଦ ମନ୍ଦିରର ମୁଖ୍ୟ ପୂଜକ । ତାଙ୍କ ଘର ବାଖରାବାଦ ନନ୍ଦ ସାହି । ସେ ଆମ ଘର ଭାଗବତ ଗାଦିର ମଧ୍ୟ ପୂଜକ । ନନ୍ଦେ ଆପଣେଙ୍କର ଚେହେରା ବୋଧହୁଏ ତାଙ୍କ ଦାଢ଼ି ଯୋଗୁଁ ଖୁବ୍ ବ୍ୟକ୍ତିତ୍ୱସଂପନ୍ନ ଦେଖାଯାଏ । ସେ ପୁଣି (ଯୁଗଳ) ଜନ୍ମ ଉପଲକ୍ଷେ ବଡ଼ଜେଜେଙ୍କ ଠାରୁ କୁଣ୍ଡଳ ପାରିତୋଷିକ ପାଇଲେ । ସ୍ତୋତ୍ର ବୋଲିଲା ବେଳେ କୁଣ୍ଡଳ ଦି'ଟା ଆପେ ହଲେ କି ସେ ହଲାନ୍ତି କିଏ ଜାଣେ ?

ବୈଠକଖାନାର ଶାଗୁଆ ଗାଲିଚା ଭଳି ଘାସର ଲନ୍ ପାରି ହୋଇ ଅନ୍ଦର ମହଲ ଆଡ଼କୁ ଗଲାବେଳକୁ ବାଁପଟେ ଗୋଟାଏ ଚଉଖୁଣ୍ଟିଆ ପାଣି କୁଣ୍ଡ । ତା' ଉପରେ ଲ୍ୟାଭେଣ୍ଡର ଲତା ମାଡ଼ି ସେଇଟା ଗୋଟାଏ କୁମ୍ଭ ପରି ଦିଶେ । ସେ ପାଣିକୁଣ୍ଡରେ ନାନା ରଙ୍ଗର ମାଛ । ଡାହାଣ ପଟକୁ ଗୋଟାଏ ତାରଜାଲି ଦିଆ ଘର । ସେଥିରେ ନାନାଜାତିର ଚଢ଼େଇ କିଚିରି ମିଚିରି ହେଉଥାନ୍ତି । ସେ ଘରେ ଗୋଟାଏ ଖୁରାଣ୍ଟି ବା କୁଟୁରା ମଧ୍ୟ ରହିଥାଏ । ସାନ ଜେଜେ ଗଡ଼ଜାତରୁ ହରିଣ, କୁଟୁରା ଆଦି ପଠାନ୍ତି । ଥରେ ଗୋଟାଏ ବାଘ ଛୁଆ ମଧ୍ୟ ସେ ପଠାଇଥିଲେ ।

ଭିତରକୁ ପଶିଲାବେଳକୁ ବାଁ ପାଖରେ ପଢ଼ାଘର । ଡାହାଣ ପାଖରେ ଭୃତ୍ୟ ନିବାସ । ଘରର ସାର୍ବଜନିନ ଚାକରଙ୍କ ଛଡ଼ା ଜେଜେ ଓ ମାମୁମାନଙ୍କର ପ୍ରତ୍ୟେକଙ୍କର ଜଣେ ଜଣେ ଖାସ୍ ଚାକର ଥାନ୍ତି । ସେମାନେ ନିତ୍ୟକର୍ମ ପାଇଁ ପାଣି ଯୋଗାଇବା, ଗାଧୋଇବା ପୂର୍ବରୁ ତେଲମାଲିସ କରିବା ଠାରୁ ଆରମ୍ଭ କରି ଅନ୍ଦରମହଲରୁ ପାନ ଆଣି ଯୋଗାଇବା ଯାଏ ନାନା ପ୍ରକାର କାମ କରନ୍ତି । ଭୃତ୍ୟ ନିବାସ ପାଖକୁ ରୋଷେଇ ଘର । ନାଲୁ ପୂଜାରୀ ସେ ବିଭାଗର ମୁଖ୍ୟ । ଆଉ ୩/୪ଜଣ ଛୋଟ ଛୋଟ ଶିକ୍ଷାନବିସ ମଧ ଥାନ୍ତି । ତାଙ୍କୁ କଷି ପୂଜାରୀ କୁହାଯାଏ ।

ଭୃତ୍ୟ ନିବାସ ଓ ରୋଷେଇ ଘର ଅଗଣାରେ ଗୋଟାଏ କୂଅ । ଅଗଣାର ଆରପଟ ଘରେ ହରିମାମୁ ରହନ୍ତି । ହରିମାମୁ ବୋଉର ମାଉସୀପୁଅ ଭାଇ । ଶୈଶବରୁ ମାତୃହୀନ । ମୃଗୀ ରୋଗ ଥିବାରୁ ସେ ଏକ ପ୍ରକାର ଅକର୍ମଣ୍ୟ । ବେକରେ ଗୋଛାଏ ତୁଳସୀମାଳୀ ପିନ୍ଧିଥାନ୍ତି । ନଦିଆ ନବଦ୍ୱୀପରୁ ରାମଦାସ ବାବାଜୀ ତାଙ୍କ ଦଳବଳ ସହ ଆସି ମାମୁଘରେ ରହିବା ବେଳେ ହରିମାମୁ ସେମାନଙ୍କ ଖବରାଖବର ବୁଝନ୍ତି ।

ଅନ୍ଦରମହଲ ଭିତରେ ପଶିଲା ବେଳକୁ ବାଁପଟେ ଦୋ'ତାଲାକୁ ଯିବାକୁ କାଠ ଶିଡ଼ି । ସେଇ କାଠ ଶିଡ଼ି ଜେଜେମା'ଙ୍କ ଦରବାର । ଜେଜେମା'ଙ୍କୁ ଦେଖିଲେ ଘରର କର୍ତ୍ତ୍ରୀ କିପରି ହେବା ଉଚିତ ତାହା କଳନା କରିହୁଏ । ଜେଜେମା' ଅଳ୍ପସ୍ୱଳ୍ପ ପାଠ ପଢ଼ିଥିଲେ । ଜେଜେବାପା ଅର୍ଥାତ୍ ସ୍ୱନାମଧନ୍ୟ ନନ୍ଦ କିଶୋର ଦାସ ଡେପୁଟି ମାଜିଷ୍ଟ୍ରେଟ୍ ପଦରୁ ଉନ୍ନୀତ ହୋଇ ପଲିଟିକାଲ ଏଜେଣ୍ଟ– ଗଡ଼ଜାତସମୂହର ସୁପରିଣ୍ଟେଣ୍ଡେଣ୍ଟ ହୋଇଥିଲେ । ସେ ପ୍ରଥମ ଓଡ଼ିଆ ଜିଲ୍ଲା କଲେକ୍ଟର ଭାବରେ ଅନୁଗୁଳରୁ ପୁରୀ ଆସିବା ବାଟରେ ଅସୁସ୍ଥ ହୋଇ ପୁରୁଣାଗଡ଼ରେ ତାଙ୍କର କାଳ ହୋଇଗଲା । ବ୍ରିଟିଶ ସରକାରଙ୍କ ପକ୍ଷରୁ ତାଙ୍କ ନାମରେ ଗୋଟାଏ ସ୍ମୃତିଫଳକ ମୁଁ ୧୯୬୦ରେ ସେଠାରେ ଦେଖିଥିଲି । ଜଣେ ପ୍ରଶାସକ ଭାବରେ ସେ ଖ୍ୟାତି ଅର୍ଜିଥିଲେ । ଓଡ଼ିଶାର ଜାତୀୟ ଓ ସାଂସ୍କୃତିକ ଜୀବନ ସହିତ ସେ ଜଡିତ ଥିଲେ । ଜେଜେମା ଏହି ପ୍ରତାପୀ ପୁରୁଷଙ୍କ ସହ ତାଳ ଦେଇ ତାଙ୍କର ଯଥାର୍ଥ ସହଧର୍ମିଣୀ ବୋଲାଇଥିଲେ । ୧୮୮୧ ଖ୍ରୀଷ୍ଟାବ୍ଦ ବେଳକୁ ସେ ତାଙ୍କ ଝିଅମାନଙ୍କୁ ପାଠ ପଢ଼ିବାକୁ ସ୍କୁଲକୁ ପଠାଇ ପାରିଥିଲେ । ତାଙ୍କ ବଡ଼ଝିଅ ନିଶାମଣି ଓ ଭକ୍ତକବି ମଧୁସୂଦନଙ୍କ ଝିଅ ବାସନ୍ତୀ ପ୍ରଥମ ଓଡ଼ିଆ ଝିଅ ୧୮୮୧ରେ ଭର୍ଣ୍ଣାକ୍ୟୁଲାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଖ୍ରୀଷ୍ଟିଆନ୍‌ମାନଙ୍କୁ ସେ ଯୁଗରେ ଅସ୍ପୃଶ୍ୟ ମନେ କରାଯାଉଥିଲା । ସେ ଖ୍ରୀଷ୍ଟିଆନ୍ ଶିକ୍ଷୟିତ୍ରୀ ନିଯୁକ୍ତ କରି ଝିଅମାନଙ୍କୁ ସିଲେଇ ଶିଖାଉ ଥିଲେ । ପୁଣି ଆହୁରି ପାହାଚେ ଆଗେଇ ଯାଇ ମୁସଲମାନ ଓସ୍ତାଦ୍ ଖାନୁମିଆଁଙ୍କୁ ଝିଅମାନଙ୍କର ସଙ୍ଗୀତ ଶିକ୍ଷକ ନିଯୁକ୍ତ କରିଥିଲେ । ଯେଉଁ ନୂଆ ନୂଆ ଓଡ଼ିଆ ଓକିଲ ବା ହାକିମଙ୍କ ସ୍ତ୍ରୀମାନେ ଗ୍ରାମାଞ୍ଚଳରୁ ପ୍ରଥମ କରି କଟକ ଆସୁଥିଲେ, ସେମାନଙ୍କୁ ଆଦବ୍‌କାଇଦା ଶିଖାଉଥିଲେ ଜେଜେମା ।

ତାଙ୍କର ବଡ଼ଝିଅ ନିଶାମଣିଙ୍କୁ 'ଭୀମାଭୂୟାଁ'ର ଲେଖକ ତଥା କୁଳବୃଦ୍ଧ ମଧୁସୂଦନଙ୍କ ଅନୁଜ ଗୋପାଳବଲ୍ଲଭ ଦାସ ବିବାହ କରିଥିଲେ । ଗୋପାଳବଲ୍ଲଭ ଖଣ୍ଡାଧାରରେ ଚାଲିବା ଲୋକ

ଥିଲେ । ସେ ସାମାନ୍ୟତମ ଅବ୍ୟବସ୍ଥା ବରଦାସ୍ତ କରି ପାରୁନଥିଲେ । ଦିନେ ରାତିରେ ଶୋଇବା ବେଳେ ସେ ଦେଖିଲେ ମଶାରିରେ ଟିକିଏ ଖୁଞ୍ଚ ଲାଗି ଯାଇଛି । ପ୍ରତ୍ୟୁଷରୁ ମଶାରି ମରାମତି କରିବା ପାଇଁ ସେ ଯେଉଁ ବରାଦ କରିଥିଲେ କୌଣସି କାରଣରୁ ନିଶାମଣି ତାହା କରିପାରି ନଥିଲେ । ଏହା ଦେଖି ଗୋପାଳବଲ୍ଲଭ ନିଶାମଣିଙ୍କୁ ସତ୍ୟଭାମାପୁର ପଠାଇ ଦେବାକୁ ସବାରିଗଡତ୍ ବରାଦ କଲେ । ନିଶାମଣିଙ୍କ ବାପଘର ଧାଈ ଏହା ଦେଖି ଗୋପାଳବଲ୍ଲଭଙ୍କ ବନ୍ଧବାସେଲୀ ଘରୁ ବାଙ୍କାବଜାରକୁ ଧାଇଁ ଧାଇଁ ଯାଇ ଏ ସୁସମାଚାର ଜେଜେମା'ଙ୍କୁ ଶୁଣାଇଲେ । ଜେଜେମା' ତୁରନ୍ତ ଗାଡ଼ିଖାନାରୁ କୋଚ୍‌ମ୍ୟାନ୍‌କୁ ଡାକି ଘୋଡାଗାଡ଼ି ବାହାର କରାଇ ବନ୍ଧବାସେଲୀରେ ପହଞ୍ଚିଗଲେ । ସେ ଜ୍ୱାଇଁଙ୍କୁ କହିଲେ– ମୁଁ ଶୁଣୁଛି ମୋ ଝିଅର ଦୋଷତ୍ରୁଟି ଯୋଗୁ ତମେ ତାକୁ ସତ୍ୟଭାମାପୁର ପଠାଇ ଦେଇଛ । ମୁଁ ତାକୁ ତମକୁ ବିଭା କରିଦେଇଛି । ତମେ ଯଦି ତାକୁ ରଖି ନ ପାରିବ ମୋ ପାଖକୁ ପଠାଇ ଦେବ । ସେ ସତ୍ୟଭାମାପୁରକୁ ବିଭା ହୋଇନାହିଁ ।

ଏହା ଶୁଣି ଗୋପାଳବଲ୍ଲଭ ତାଙ୍କ ରାୟ ବଦଳାଇଲେ ।

ଗୋପାଳବଲ୍ଲଭ ସାଙ୍ଗମେଳରେ ହସଖୁସିଆ ପରିହାସପ୍ରିୟ ମଧ୍ୟ ଥିଲେ । ଥରେ ସାଙ୍ଗମାନେ ଠିକ୍ କଲେ ଯେ ପ୍ରତି ସପ୍ତାହରେ ଦିନେ ଜଣେ ଜଣେ ସାଙ୍ଗଙ୍କ ଘରେ ଭୋଜି ହେବ । ସବୁ ସାଙ୍ଗଙ୍କ ଭୋଜି ଦେବା ପାଳି ସରିଲା । ମାତ୍ର ଗୋକୁଳାନନ୍ଦ ଚୌଧୁରୀ ଭୋଜି ଦେବାକୁ ଧରାଛୁଆଁ ଦେଲେ ନାହିଁ । ଦିନେ ଗୋକୁଳାନନ୍ଦ ଘରେ ନଥିବା ବେଳେ ଗୋପାଳବଲ୍ଲଭ ତାଙ୍କ ଅନ୍ଦରମହଲକୁ ପଶିଯାଇ ତାଙ୍କ ଶୋଇବା ଘରକୁ ଯାଇ ଠଣାରେ ଥୁଆ ହୋଇଥିବା ଗୋକୁଳାନନ୍ଦଙ୍କ ସ୍ତ୍ରୀ ପଦ୍ମାବତୀଙ୍କ ନୋଥ, ବସଣି, ଗଣ୍ଠିଆ ଆଦି ସୁନାଗହଣାଗୁଡ଼ିକ ପକେଟରେ ପୂରେଇ ଚାଲି ଆସିଲେ । ସେଦିନ ଗୋପାଳବଲ୍ଲଭଙ୍କ ଘରେ ଭୋଜି ହେଲା । ଭୋଜି ପରେ ଖୁସି ଗପ ଚାଲିଥିବା ବେଳେ ଗୋପାଳବଲ୍ଲଭ ଗୁଡ଼ିଆକୁ ଡାକି ସେହି ସୁନାଗହଣାତକ ତାକୁ ଦେଇ କହିଲେ– ଏ ଗହଣା ଗୋକୁଳାନନ୍ଦକୁ ଦେଇ ତାଙ୍କ ଠାରୁ ତୁମ ପାଉଣା ନେବ । ଗୋପାଳବଲ୍ଲଭ ସଂଗୀତପ୍ରିୟ ଥିଲେ । ସେ ଶୋଇବା ବେଳେ ତାଙ୍କର ଦୁଇଝିଅ ବା କୌଣସି ଓସ୍ତାଦ୍ ତାଙ୍କୁ ପ୍ରତିଦିନ ଗୀତ ଶୁଣାଉଥିଲେ । ଓଡ଼ିଶାର ପ୍ରାଚୀନ କବିମାନଙ୍କର ରଚନାଗୁଡ଼ିକ ପର୍ଯ୍ୟାୟକ୍ରମେ ସଂକଳନ କରି ସେ 'ପ୍ରୀତିସୁଧାକର' ନାମରେ ଗୋଟିଏ ଗୀତିନାଟ୍ୟ ସଂପାଦନା କରିଥିଲେ ।'

ଏଥିସହିତ ସେ 'ଉତ୍କଳ ସମ୍ମିଳନୀ' ସହିତ ମଧ୍ୟ ସଂପୃକ୍ତ ଥିଲେ । ସେ ମୁଜାଫରପୁରରେ ମାଜିଷ୍ଟ୍ରେଟ୍ ଥିବାବେଳେ ଖୁଦୀରାମଙ୍କ ବୋମାବର୍ଷଣ ଘଟଣା ଘଟିଥିବା କଥା ତାଙ୍କ ଝିଅ ରମା ଦେବୀ ନିଜ ଆତ୍ମକଥାରେ ବର୍ଣ୍ଣନା କରିଛନ୍ତି ।

ତାଙ୍କର ଦୁଇଝିଅ– ଉମା ଓ ରମା । ଉମା ତେନ୍ତୁଳିପଦାର ପଦ୍ମଚରଣ ପରିଜା ଓ ରମା ଖେରସର ଗୋପବନ୍ଧୁ ଚୌଧୁରୀଙ୍କୁ ବିବାହ କରିଥିଲେ ।

ଜେଜେମା'ଙ୍କର ଆଉଜଣେ ଜ୍ୱାଇଁ ବାଳମୁକୁନ୍ଦ କାନୁନଗୋ । ତାଙ୍କ ପୁଅ ନିତ୍ୟାନନ୍ଦ କାନୁନଗୋ ଓକିଲ ଥିଲେ । ସେ ରାଜନୀତିପ୍ରିୟ ଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ

୧୯୩୦ ଓ ୧୯୪୨ରେ କାରାବନ୍ଦୀ ହୋଇଥିଲେ । ପରବର୍ତ୍ତୀ କାଳରେ ରାଜ୍ୟ ଓ କେନ୍ଦ୍ରୀୟ ମନ୍ତ୍ରିମଣ୍ଡଳରେ ଯୋଗ ଦେଇଥିଲେ ଏବଂ ଗୁଜୁରାଟ ଓ ବିହାରରେ ରାଜ୍ୟପାଳ ମଧ ହୋଇଥିଲେ ।

ଜେଜେମା'ଙ୍କର ତିନିପୁଅ ଓ ଚାରି ଝିଅ । ବଡ଼ପୁଅ ରାୟବାହାଦୂର ରାଜକିଶୋର, ଡେପୁଟି ମ୍ୟାଜିଷ୍ଟ୍ରେଟ୍, ପୁରୀ ବଡ଼ ଦେଉଳର ତଦାନୀନ୍ତନ ବିଶୃଙ୍ଖଳାକୁ ସଜାଡ଼ି ତାଙ୍କର ସାଂଗଠନିକ ଶକ୍ତିର ପରିଚୟ ଦେଇଥିଲେ । ସେଥିପାଇଁ ବ୍ରିଟିଶ ସରକାର ତାଙ୍କୁ ସ୍ୱର୍ଣ୍ଣପଦକ ପୁରସ୍କାର ଦେଇଥିଲେ ।

ମଝିଆଁ ପୁଅ ନବକିଶୋର ସବ୍‌ରେଜିଷ୍ଟ୍ରାର ଥିଲେ । ଅତିରିକ୍ତ ମଦ୍ୟପାନ ହେତୁ ତାଙ୍କର ଅଳ୍ପ ବୟସରେ କାଳ ହୋଇଗଲା । ସେତେବେଳକୁ ତାଙ୍କର ତିନିପୁଅ ଓ ଝିଅ ନାବାଳକ । ବୋଉ କହୁଥିଲା– ବଡ଼ଜେଜେ ତାଙ୍କ ଭାଇକୁ ଦାହ କରି ଆସି ସଙ୍ଗେ ସଙ୍ଗେ ପଣ୍ଡିତମାନଙ୍କୁ ଡକାଇ ଅତିବଡ଼ି ଜଗନ୍ନାଥ ଦାସଙ୍କର ଭାଗବତର ଶୁଦ୍ଧ ସଂସ୍କରଣ ପ୍ରକାଶ କରିବା ପାଇଁ ସଂକଳ୍ପ କଲେ । ସେ ଯୁଗରେ ଭାଗବତ ତାଳପତ୍ର ପୋଥିରେ ଲେଖାଥିଲା । ଯେଉଁ ଘରେ ଏ ପୋଥି ରହୁଥିଲା ତାକୁ ଭାଗବତଟୁଙ୍ଗୀ କୁହାଯାଏ । ପୋଥିଗୁଡ଼ିକୁ ମୂର୍ତ୍ତି ଆକାରରେ ସଜାଇ, ଲୁଗା ପିନ୍ଧାଇ ପୂଜା କରାଯାଏ । ତାକୁ ଭାଗବତ ଗାଦି କୁହାଯାଏ । କାଳକ୍ରମେ ଏହି ଭାଗବତରେ ଅଶୁଦ୍ଧି ଓ ପ୍ରକ୍ଷିପ୍ତ ପଶି ଯାଇଥିଲା । ବଡ଼ଜେଜେ ଏହି ତାଳପତ୍ର ପୋଥି ସଂଗ୍ରହ କରାଇ ପଣ୍ଡିତମାନଙ୍କ ଦ୍ୱାରା ସଂସ୍କୃତ ଭାଗବତ ସାହାଯ୍ୟରେ ଅତିବଡ଼ି ଜଗନ୍ନାଥ ଦାସଙ୍କ ଭାଗବତର ଶୁଦ୍ଧ ସଂସ୍କରଣ ପ୍ରକାଶ କଲେ । ତାଙ୍କର ଏହି ଅବିସ୍ମରଣୀୟ କାର୍ଯ୍ୟ ପାଇଁ ଓଡ଼ିଶା ତାଙ୍କ ଠାରେ କୃତଜ୍ଞ ।

ବଡ଼ଜେଜେ ଆମମାନଙ୍କୁ ଦଶରା ଓ ଦିଆଲିକୁ ଯାତ୍ରା ଖରଚ ଦେଉଥିଲେ । ଆମେ ନାତି ନାତୁଣୀ ସଂଖ୍ୟାରେ ବହୁତ ବେଶୀ ହୋଇଯାଇଥିଲୁ । ବଡ଼ଜେଜେଙ୍କର ଗମ୍ଭୀର ସ୍ୱଭାବ ହେତୁ ତାଙ୍କ ପାଖରେ ଅଝଟ ହେବା ବା ଅଳି କରିବାଟା ପଟୁ ନଥିଲା । ଅଥଚ ଯାତ୍ରା ଖରଚ ମିଳିବାରେ ବିଳମ୍ବ ହେଲେ ଆମେ ଅଧୀର ହୋଇ ପଡୁଥିଲୁ । ସେଥିପାଇଁ ମଧ୍ୟାହ୍ନ ଭୋଜନ ପରେ ବଡ଼ଜେଜେ ଯେଉଁଠି ଛିଡ଼ା ହୋଇ କଥା ଶୁଣନ୍ତି ସେହି କାନ୍ଥରେ ଲେଖିଦିଆ ହେଲା– "ବଡ଼ ଜେଜେ ! ଦଶରା ଖରଚ ନିତାନ୍ତ ପ୍ରୟୋଜନ ।" ଏ ଔଷଧ କାଟୁକଲା ।

ସାନଜେଜେ ବୀରକିଶୋର ଦାସ ଏତେ ଓଜନିଆ ସ୍ୱଭାବର ନଥିଲେ । ସେ ଆମସଂଗରେ ଥଟ୍ଟା ଖେଳୁଥିଲେ । ଭାଇ (ମହନଭାଇ) ପିଲାଦିନୁ ହାତକଟା ସୂତାର ଖଦୀ ନିଷ୍ଠାର ସହିତ ପିନ୍ଧୁଥିଲେ । ସାନଜେଜେ ଭାଇକୁ ଦେଖିବା ମାତ୍ରେ ତାଙ୍କ ଚାକରକୁ କହୁଥିଲେ– "ଗଲୁ ରାମେଶ୍ୱର (ମୋଦୀ) ଦୋକାନରୁ ମୋହନ ପାଇଁ ଗୋଟାଏ ବିଲାତୀ ଲୁଗା ନେଇ ଆସିବୁ ।"

ଜେଜେମା'ଙ୍କ ଝିଅମାନଙ୍କ ଡାକ ନାଆଁ ଧୋବଣୀ, ପାଲୁଣୀ, ହାଡ଼ିଆଣୀ । ସୂତାହାଟରେ ବିଭା ହୋଇଥିବା ଝିଅଙ୍କ ନାଆଁ ମନେ ପଡୁନାହିଁ । ବାଉରାଣୀ କି କଣ୍ଡରୁଣୀ ହୋଇଥିବ । ଜାତକ ନାଆଁ ନିଶାମଣି, ବସନ୍ତ କୁମାରୀ, ହେମନ୍ତ କୁମାରୀ । ନିଶାମଣି ସର୍ବଗୁଣ ସଂପନ୍ନା ଓ

ପରମାସୁନ୍ଦରୀ ଥିଲେ । ପାଠ, ସିଲେଇ, ରନ୍ଧାବଢ଼ାରେ ଅତି ଦକ୍ଷ ଥିଲେ । ବାପା ନନ୍ଦକିଶୋର ଦାସ ଭୋଜନ ରସିକ ଥିଲେ । ଅଥଚ ହଜମ ଶକ୍ତି ଭଲ ନଥିଲା । (କୁଳବୃଦ୍ଧ) ମଧୁସୂଦନ ସେଥିପାଇଁ ତାଙ୍କୁ କହୁଥିଲେ– ଆପଣ ସୁଆଦିଆ ଖାଦ୍ୟଗୁଡାକ ଚୋବେଇ ଚୋବେଇ ପାଟିରୁ କାଢ଼ି ପକାନ୍ତୁ । ତା'ହେଲେ ଜିଭ ସୁଆଦ ଚାଖିବ; ପେଟ ମଧ ଭଲ ରହିବ । ନିଶାମଣି ବାପ ସୁଆଗି ଝିଅ ଥିଲେ । ଗୋପାଳବଲ୍ଲଭଙ୍କର ସେ ପ୍ରଥମ ସ୍ତ୍ରୀ । ଝିଅଟିଏ ଜନ୍ମହେବା ପରେ ତାଙ୍କର ମୃତ୍ୟୁ ହେଲା । ସେ ଝିଅକୁ (ଦେଢ଼ଶ୍ୱଶୁର) ନିଜ କୋଠିରେ ବିଦେଶୀ ପରିଚାରିକା ନିଯୁକ୍ତ କରି ପାଳିଥିଲେ । ମାତ୍ର ସେ ବାହୁଡ଼ିଗଲା । ତଦନନ୍ତର ବସନ୍ତ କୁମାରୀ (ପାଲୁଣୀ) ଗୋପାଳବଲ୍ଲଭଙ୍କୁ ବିଭା ହେଲେ । ହେମନ୍ତ କୁମାରୀ ଓରଫ ହାଡିଆଣୀ ଡେପୁଟି ମାଜିଷ୍ଟ୍ରେଟ୍ ବାଳମୁକୁନ୍ଦ କାନୁନ୍‌ଗୋଙ୍କୁ ବିଭା ହୋଇଥିଲେ । ସେ ସଭର୍ତ୍ତୃକ ନଦିଆ ନବଦ୍ୱୀପର ଚରଣ ଦାସ ବାବାଜୀଙ୍କ ଠାରୁ ଗୁରୁମନ୍ତ୍ର ନେଇଥିଲେ । 'ପରିଚାରିକା' ମାସିକ ପତ୍ରିକାରେ ତାଙ୍କର 'ପାକପ୍ରଣାଳୀ' ରଚନା କ୍ରମାନ୍ୱୟରେ ପ୍ରକାଶିତ ହେଉଥିଲା । ଆଉଜଣେ ଝିଅ ସୂତାହାଟ (କଟକ)ର ଗୋଟିଏ ଜମିଦାର ପରିବାରରେ ବିଭା ହୋଇଥିଲେ । ଏ ସବୁଯାକ ଭଉଣୀ ବିଦ୍ୟାଳୟରେ ଭର୍ଣ୍ଣାକୁଲାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ମାମୁବୋଉ ତିନିଜଣଙ୍କୁ ମୁଁ ଦେଖିଛି । ବଡ଼ ମାମୁବୋଉଙ୍କ ନାଆଁଟା ଯେତେଦୂର ମନେ ପଡୁଛି ବୋଧହୁଏ ଚନ୍ଦ୍ରମଣି । ସେ ବିଭା ହୋଇ ଆସିବା ବେଳେ ଓଡ଼ିଆ ଲେଖିପଢ଼ି ପାରୁଥିଲେ । ତାଙ୍କ ଶ୍ୱଶୁର ତାଙ୍କ ପାଇଁ ଲେଖାପଢ଼ାର ବ୍ୟବସ୍ଥା କରିଥିଲେ; ଯେପରି ଘରଖର୍ଚ୍ଚର ହିସାବ ସେ ରଖିପାରିବେ ଏବଂ ପତ୍ର ମାଧ୍ୟମରେ ତହସିଲଦାରଙ୍କ ସହିତ ସଂପତ୍ତିର ରକ୍ଷଣାବେକ୍ଷଣ ବାବଦରେ ତଦବିର କରିପାରିବେ । ଜେଜେମା'ଙ୍କ ପରେ ସେ ହେଲେ ଘରର କର୍ତ୍ତ୍ରୀ । ତାଙ୍କର ସବୁ ଆଡ଼କୁ ସତର୍କ ଦୃଷ୍ଟି ଥିଲା । ମୁଁ ଜନ୍ମ ହେବା ପରେ ମାମୁଘରେ କୌଣସି ଝିଅର ସମାଲୋଚନା ଶୁଣି ମୋ ବୋଉ ହସିଲା । ମାମୁ–ବୋଉ ବୋଉକୁ ଆକଟ କରି କହିଲେ– ବେଲୁ ! ତୋର ଝିଅହେଲା ଦିନୁଁ ଆମ ମୁହଁବନ୍ଦ ହୋଇଯାଇଛି । କାହାରି କଥାରେ କଥା କହୁନାହୁଁ, କାଳେ ତୋ ଝିଅ କୋଉଠି ନାଆଁ ପକେଇବ, ଆମ ମୁହଁରେ କାଳି ବୋଳିବ–ଏହି ଭୟରେ । ତୁ ପୁଣି ଅନ୍ୟର ଝିଅ କଥା ଶୁଣି ହସୁଛୁ ? ସେହିଦିନଠାରୁ ବୋଉର ପରନିନ୍ଦାରେ ରସ ଗ୍ରହଣ କରିବା ବୃତ୍ତି ଚାଲିଗଲା ବୋଲି ବୋଉ କହେ । ମାମୁବୋଉଙ୍କର ଏହି ଉପଦେଶ ବୋଉର ପରବର୍ତ୍ତୀ କାଳର ସାର୍ବଜନୀନ ସେବା କ୍ଷେତ୍ରରେ ହଜାର ହଜାର ଲୋକଙ୍କୁ ଘେନି ଚଳିବାରେ ବହୁତ ସହାୟକ ହେଲା । ମାମୁ–ବୋଉ ଜ୍ୟୋତିଷ ଦେଖିବା ମାତ୍ରେ ନିଜ ହାତ ଦେଖାଇ ପଚାରନ୍ତି– ସଧବା ଅବସ୍ଥାରେ ତାଙ୍କର ମୃତ୍ୟୁ ହେବ କି ନାହିଁ । ସବୁ ଜ୍ୟୋତିଷ କହୁଥିଲେ– ସଧବା ଥାଇ ତାଙ୍କର ମୃତ୍ୟୁ ହେବ । ଜଣେ ଜୋତିଷ ତାଙ୍କ ହାତ ଦେଖି କହିଲେ ଯେ ତାଙ୍କର ବୈଧବ୍ୟ ଯୋଗ ଅଛି । ସେହିଦିନଠାରୁ ସେ ବିଛଣା ଧରିଲେ ଏବଂ ସଧବା ଅବସ୍ଥାରେ ତାଙ୍କର ମୃତ୍ୟୁ ହେଲା ।

ତପ୍ତକାଞ୍ଚନବର୍ଣ୍ଣା, କୁଞ୍ଚିତକେଶୀ, ତନ୍ୱଙ୍ଗୀ ବୋଉମଝିଆଁ ମାଇଁକୁ ରାଣୀ ହେବା ପାଇଁ ଷଠୀମା' ଗଢ଼ିଥିଲେ । ସେ ଯେତେବେଳେ ତାଙ୍କର ରକ୍ତାଭ ଆଂଗୁଳିରେ କରଞ୍ଜି ଗଢ଼ନ୍ତି ବା ମଞ୍ଜା କାଟନ୍ତି, ତାଙ୍କର ସେହି ଆଙ୍ଗୁଳି ଚାଳନାକୁ ଘଣ୍ଟା ଘଣ୍ଟା ଧରି ଚାହିଁ ରହିବାକୁ ମନ ହୁଏ । ତାଙ୍କ ନାଁ ଲକ୍ଷ୍ମୀପ୍ରିୟା । ଅଳ୍ପ ବୟସରେ ସ୍ୱାମୀ ହରାଇଥିବା ହେତୁ ବୋଧହୁଏ ସେ ଅନ୍ୟମାନଙ୍କ ଅପେକ୍ଷା ଧର୍ମକର୍ମରେ ଅଧିକ ମନୋଯୋଗୀ ଥିଲେ ଏବଂ ଆଚାର ବିଚାର ମାନି ଚଳୁଥିଲେ । ସବୁକଥାରେ 'ଭୟେ ଭୟେ ରଇ ବୁଝିବା ହାରାଇ' ମନୋବୃତ୍ତି ତାଙ୍କର କଥାବାର୍ତ୍ତାରୁ ଜଣାପଡ଼େ । ନାତି ନାତୁଣୀ ଦୁମୁଦୁମୁ ହୋଇ ଶିଡିରେ ଚଢ଼ିଗଲେ ସେ ଡରିଯାଆନ୍ତି କାଳେ କିଛି ବିଘଟଣ ଘଟିଯିବ । 'ଘରପୋଡ଼ୀ ଗାଈ ସିନ୍ଦୂରା ମେଘ ଦେଖିଲେ ଡରେ' ପରି ନାତି ନାତୁଣୀଙ୍କର ଟିକିଏ କିଛି ହେଲେ ସେ ବ୍ୟତିବ୍ୟସ୍ତ ହୋଇ ପଡୁଥିଲେ ।

ସାନ ମାମୁ–ବୋଉକୁ ମୁଁ ଟିକିମା' ଡାକୁଥିଲି । ସେ ଅତି ଅଳ୍ପ ବୟସରେ ସଂସାରରୁ ବିଦାୟ ନେଲେ । ତାଙ୍କ ସ୍ମୃତି ଅସ୍ପଷ୍ଟ ।

ବଡ଼ ଜେଜେଙ୍କର ଝିଅ ନଥିଲେ । ମାଳ ଅପା, ମଝିଆଁ ଜେଜେ ଓ କୁନି ଅପା ସାନ ଜେଜେଙ୍କ ଝିଅ । ଦୁହେଁ କଣ୍ଟାପାରିର ଜମିଦାର ରାଧାଶ୍ୟାମଙ୍କ ଘରେ ବିଭା ହୋଇଥିଲେ । ମାମୁଘରେ ଦେଖିବ କିଶୋର ମେଳା । ବଡ଼ଜେଜେଙ୍କ ପୁଅ ପ୍ରମୋଦ କିଶୋର, ନିକୁଞ୍ଜ କିଶୋର, ଉପେନ୍ଦ୍ର କିଶୋର ଓ ନଗେନ୍ଦ୍ର କିଶୋର । ମଝିଆଁ ଜେଜେଙ୍କ ପୁଅ ଚନ୍ଦ୍ର କିଶୋର, ଦେବେନ୍ଦ୍ର କିଶୋର, ନରେନ୍ଦ୍ର କିଶୋର । ସାନ ଜେଜେଙ୍କ ପୁଅ ରବୀନ୍ଦ୍ର କିଶୋର ଓ ଗୌର କିଶୋର । ମାଳ ଅପା ଓରଫ ପ୍ରମୀଳା ଓ କୁନି ଅପା ଓରଫ ଶକୁନ୍ତଳା ବଡ଼ ଗର୍ବରେ କହନ୍ତି ଆମର ନଅ ଭାଇ ।

ବଡ଼ଜେଜେ ଏ ସମସ୍ତଙ୍କୁ ଏପରି ଭାବରେ ପାଳୁଥିଲେ, ବିଶେଷରେ ଚନ୍ଦ୍ର କିଶୋର ଓରଫ ବେଙ୍ଗ ମାମୁଙ୍କୁ ଏପରି ସ୍ନେହ କରୁଥିଲେ ଯେ ଏ ସମସ୍ତେ ତାଙ୍କର ଜନ୍ମିତ ପୁତ୍ର କନ୍ୟା ବୋଲି ମନେ ହେଉଥିଲା । ବେଙ୍ଗମାମୁ ବଡ଼ଜେଜେଙ୍କ ସାଙ୍ଗରେ ଏକା ଥାଳିରେ ଭାତ ଖାଇବେ । ବଡ଼ଜେଜେ ଭାତ ଗୋଳେଇ ଦେବେ । ତାଙ୍କୁ ଭାତ ଗୋଳେଇ ଆସେ ନାହିଁ । ବେଙ୍ଗମାମୁ ପୁଅର ବାପ ହେବା ପରେ ମଧ୍ୟ ତାଙ୍କୁ ଭାତ ଗୋଳେଇ ଦେବାକୁ ପଡୁଥିବାର ଦେଖି ଆମେ ତୃତୀୟ ପୁରୁଷ ହସାହସି ହେଉଥିଲୁ । ବଡ଼ମାମୁ ପ୍ରମୋଦକୁମାର ଧୀର, ଶାନ୍ତ, ମିଷ୍ଟଭାଷୀ । କାହାରିକୁ 'ତୁ' କହିଥିବାର, ଏପରିକି ସାନ ଭାଇକୁ ସୁଦ୍ଧା 'ତୁ' କହିବାର ଶୁଣାଯାଏ ନାହିଁ । ବୋଉ କହେ– ଭାଇକୁ ସେ ଯୁଧିଷ୍ଠିର ମନେ କରେ ।

ମାମୁଘରେ ଯେତେବେଳେ ଘୋଡ଼ାଗାଡ଼ି ବଦଳରେ ମୋଟର କାର ଚଢ଼ିବା ଚଳଣି ହେଲା– କଲିକତାରୁ ମୋଟରକାର କିଣା ହୋଇ ଆସିଲା । ଆମେ ଆଉ ତଳେ ଚାଲିବାକୁ ମନେ କଲୁ ନାହିଁ । ଦିନେ ଦେଖାଗଲା ବେଙ୍ଗମାମୁ ମୋଟର କାରଟାକୁ ପୂରାପୂରି ଖୋଲିଦେଇ ଯନ୍ତ୍ରପାତି ସବୁ ପୁଣି ଖଞ୍ଜୁଛନ୍ତି । ସେ ତ ଇଞ୍ଜିନିୟରିଂ ପଢ଼ି ନଥିଲେ । କିଛି ଦିନ ପରେ ମୋଟରକାରଟି

ଅକାମୀ ହୋଇଗଲାରୁ ପୁଣି ଆଉ ଗୋଟାଏ ମୋଟରକାର କିଣା ହେଲା ଏବଂ ତାର ମଧ୍ୟ ସେହି ଦଶା ହେଲା । ଫୋର୍ଡ଼, ଶେଭରଲେ, ରୁଆଣ୍ଡଲର, ନବବିମ୍, ସ୍ଟୁଡିବେକର, ପଣ୍ଟିଆକ୍ ଆଦି ଭଲ ଭଲ ଗାଡ଼ି ଅଚଳ ହୋଇଯାଏ । ଅନ୍ୟ ମାମୁମାନେ ଏଥିପାଇଁ କ୍ଷୁବ୍ଧ ହୁଅନ୍ତି, କିନ୍ତୁ ବେଙ୍ଗମାମୁଙ୍କୁ କେହି କିଛି କହନ୍ତି ନାହିଁ । କାରଣ ସେମାନେ ଜାଣିଥାନ୍ତି ବେଙ୍ଗମାମୁଙ୍କ କୀର୍ତ୍ତିକଳାପ ପଛରେ ବଡ଼ଜେଜେଙ୍କ ପ୍ରଶ୍ରୟ ଅଛି ।

ଗାଡ଼ିଗୁଡ଼ାକ ଖିନି ଖରାପ ହୋଇଗଲା କିନ୍ତୁ ବେଙ୍ଗମାମୁ ମୋଟର ମେକାନିକ୍ ଭାବରେ ଖ୍ୟାତି ଅର୍ଜନ କରି ସରକାରୀ ମାନ୍ୟତା ପାଇ ମୋଟର ଭେଇକଲ୍ ଇନ୍ସପେକ୍ଟର ଭାବରେ ନିଯୁକ୍ତି ପାଇଲେ । 'ବେଙ୍ଗୁବାବୁଙ୍କ କାରଖାନା' କଟକରେ ଖ୍ୟାତି ଲାଭ କଲା ।

ଏକାନ୍ନବର୍ତ୍ତୀ ପରିବାରରେ ସମସ୍ତଙ୍କୁ କିପରି ସମଦୃଷ୍ଟିରେ ଦେଖି ସ୍ନେହରେ ବାନ୍ଧି ରଖିବାକୁ ହୁଏ ସେ କଳାଟି ବେଙ୍ଗମାମୁ ବଡ଼ଜେଜେଙ୍କ ଠାରୁ ଉତ୍ତରାଧିକାର ସୂତ୍ରରେ ପାଇଥିଲେ । ତାଙ୍କ ପାଖରେ ଚାକର ଭାବରେ କାମ କରୁଥିବା ଲକ୍ଷ୍ମଣ, ମାଣିଆ, ସୌରିଆ ପ୍ରଭୃତି ଅନେକଙ୍କୁ ସେ କାରଖାନାରେ କାମ ଶିଖାଇ ଡ୍ରାଇଭର, କଣ୍ଡାକ୍ଟର କରି ଦେଉଥିଲେ । କଟକ ସହରରେ 'ବେଙ୍ଗୁ ବାବୁ' ଏଥିପାଇଁ ଅତି ଲୋକପ୍ରିୟ ହୋଇ ଯାଇଥିଲେ ।

କୁକୁର ଥିଲା ତାଙ୍କର ଆତ୍ମଜସ୍ୱରୂପ । କେତେ ପ୍ରକାର କୁକୁର– ଗ୍ରେଟ୍ ଡେନ୍, ଗ୍ରେ ହାଉଣ୍ଡ, ବୁଲ୍‌ଡଗ୍, ସ୍ପାନିଏଲ, ରିଟ୍ରିଭର ଆଦି ରୂପଗୁଣ ସହିତ ନାମ ଗଣିଲେ ଅଷ୍ଟୋତ୍ତର ଶତନାମ ହୋଇଯିବ । ବେଙ୍ଗମାମୁ ସେମାନଙ୍କ ପ୍ରତି ବାତ୍ସଲ୍ୟ ସ୍ନେହରେ ଉଲ୍ଲସିତ ହୋଇ ସେମାନଙ୍କ ଗୁଣ ଗାରିମା ଆମକୁ ଶୁଣାନ୍ତି । ବାଞ୍ଛା ଗୋଚ୍ଛାୟତ ସେମାନଙ୍କର ମୁଖ୍ୟ ତତ୍ତ୍ୱାବଧାରକ । ସେ ଚାଉଳରେ ହଳଦୀ ଓ ମାଂସ ମିଶାଇ ରାନ୍ଧି କୁକୁରକୁ ଖୁଆନ୍ତି । ତା ଆଗରୁ ସେମାନଙ୍କୁ ଗାଧୋଇ ଦେଇ ବୁରୁଶ କରନ୍ତି, ସାଂଧ ଭ୍ରମଣ କରାନ୍ତି । ଥରେ କୁକୁର ବାବଦରେ ବେଙ୍ଗମାମୁଙ୍କର ଏପରି ଆସକ୍ତି ଦେଖି କୁକୁରପ୍ରୀତି କମେଇବାକୁ ତାଙ୍କୁ କୁଆଡ଼େ ମଝିଆଁ ଜେଜେ ଉପଦେଶ ଦେଇଥିଲେ । ବେଙ୍ଗମାମୁ ସବୁ ଶୁଣି ସାରି କୁଆଡ଼େ କହିଲେ– "ବାପା ! ମୁଁ ସିଧା (ବିଜି) ଠାରୁ କୁକୁରକୁ ବେଶୀ ସୁଖ ପାଏ ।

ପରବର୍ତ୍ତୀ କାଳରେ ବେଙ୍ଗମାମୁଙ୍କର ଗାଈ ସଉକ ହେଲାରୁ ସମସ୍ତେ ଟିକିଏ ଆଶ୍ୱସ୍ତ ହେଲେ । ଭୋଳୀ ତତ୍ତ୍ୱାବଧାନରେ ବଡ଼ ବଡ଼ ବୃନ୍ଦାବନୀ ଗାଈ ଆମ ଦେଖନ୍ତେ ମାମୁଘରେ ସବୁଦିନେ ଥିଲେ । ଭୋଳୀ ବଡ଼ ପିତଳ ବାଲିଟିରେ ଦୁଧ ଦୁହିଁ ଆଣନ୍ତି । ବିଡାନାସୀରୁ ବେହେରାଣୀ ପ୍ରତିଦିନ ମୁଣ୍ଡରେ ସରୁ ଓଢ଼ଣା ଦେଇ ଚାଲି ଚାଲି ବାଙ୍କା ବଜାରକୁ ଆସି ସେ ବିଭାଗରେ ଅଧିଷ୍ଠିତ ହୁଅନ୍ତି । ପାଶୁରୀ ଅପା ସନ୍ଧ୍ୟା ପରେ ଗୋଟାଏ ବଡ଼ ଡିକିଚିରେ ଡିକିଚିଏ ସରମିଶା ଦୁଧ, ଦୁଇଟା ଥାଳିରେ ଆଳୁଚକଟା ଓ ଗୁଣ୍ଡ କଦଳୀ ଭଜା ରଖି ମଝି ଅଗଣାରେ ପସରା ମେଲାନ୍ତି । ସବୁ ପିଲାଙ୍କୁ ସେମାନଙ୍କ ପରିଚାରିକା ବୁଢ଼ୀ, ଦୁଃଖୀ ପ୍ରଭୃତି ଆଣି ପହଞ୍ଚାନ୍ତି । ଦୁଧ, ଭାତ, ଆଳୁଚକଟା ଓ ଗୁଣ୍ଡ କଦଳୀ ଭଜା ହେଲା ପିଲାମାନଙ୍କର ଧରାବନ୍ଧା ରାତ୍ରିଭୋଜନ । ଅବଶ୍ୟ ଶୋଇବା

ପୂର୍ବରୁ ଗିଲାସେ ଲେଖା ଦୁଧ ପିଇବାକୁ ସମସ୍ତେ ବାଧ୍ୟ । ଯାହାହେଉ ବେଙ୍ଗ ମାମୁଙ୍କର ଗୋମାତା ପ୍ରୀତି ଫଳରେ ମାମୁଘରେ ଦୁଧର ପରିମାଣ ବହୁତ ବଢ଼ିଗଲା । ଅନ୍ୟମାନଙ୍କୁ ମଧ୍ୟ ବେଙ୍ଗମାମୁ ଗାଈମାନଙ୍କ ବିଷୟରେ ବହୁତ ଇଲମ୍ ଦେଲେ । ବାପା ଯେତେବେଳେ ଗୋଜାତିର ଉନ୍ନତି ପାଇଁ ବିଭିନ୍ନ ପ୍ରକାର ଷଣ୍ଢ ଓ ଗାଈ ଆଣି ପ୍ରୟୋଗ ଆରମ୍ଭ କଲେ, ବେଙ୍ଗ ମାମୁ ତାଙ୍କ ପାଖକୁ ମଧ୍ୟ ପଲେ ନାନା ଜାତିର ଗାଈ ପଠାଇ ଦେଲେ ।

କେବଳ ଗାଈ ନୁହେଁ, ଜାତି ଜାତିକା କୁକୁଡ଼ା- ଲେଗହର୍ଣ୍ଣ, ଆର୍.ଆଇ.ଆର., ଟର୍କିଶ ଆଦି କୁକୁଡ଼ା ମଧ୍ୟ ମାମୁଘରେ ରଖାଯାଇଥାଏ । ଦିନରେ ଭାତ ସାଙ୍ଗରେ ମାଛ ଓ ରାତିରେ ରୁଚି ଅନୁସାରେ କୁକୁଡ଼ା, ମେଣ୍ଢା ବା ଛେଳି ମାଂସ ମାମୁଘରେ ନିତ୍ୟ ଭକ୍ଷ୍ୟ ଥିଲା । ବାମା ସାମଲ ସେମାନଙ୍କ ତତ୍ତ୍ୱ ନିଏ । ଗୋଟାଏ ବଡ଼ ଛେଳି ମଧ୍ୟ ବିକାନେର୍ ବା ସେଇଆଡୁ କୋଉଠୁ ଆସି ରହିଥିଲା । ମାମୁ ଘର ପୋଖରୀରେ ହଂସ, ବତକ ମଧ୍ୟ ଥାନ୍ତି । ଆମ ଘରେ ମୋ ଜନ୍ମ ପରେ ପରେ ବାବା ଆଇଁଷ ଖାଇବା ଛାଡ଼ି ଦେଇଥିଲେ । ତେଣୁ ମାଛ, ମାଂସ ଖାଇବା ପ୍ରଶ୍ନ ନ ଥିଲା । ଦିନେ ମୋ ମାଉସୀପୁଅ ଭାଇ ମୋତେ କହିଲେ, ଚାଲ୍ ଦେଖିବୁ ବାମା କେମିତି କୁକୁଡ଼ା କାଟିବ । ତୁ ଆଜି କୁକୁଡ଼ା ଖାଇବୁ । ମୁଁ ମହା ଉତ୍ସାହରେ କୁକୁଡା କଟା ଦେଖିବାକୁ ଗଲି । ବାମା ଆମ କୁକୁଡ଼ାର ଗୋଡ଼ ଦିଟା କାଟିଦେଲା । କୁକୁଡ଼ାଟା ବିକଳ ସ୍ୱରରେ ରାବି ରାବି ଗଡ଼ି ଗଡ଼ି ଖଣ୍ଡେ ଦୂର ଚାଲିଗଲା । ସେ କରୁଣ ଦୃଶ୍ୟ ଦେଖି ମୋର କୁକୁଡ଼ା ଖାଇବା ଇଚ୍ଛାଟା ଆପେ ଆପେ ଉଭେଇ ଗଲା ।

ବେଙ୍ଗମାମୁଙ୍କ ପର ମାମୁ ହେଲେ ମୁଷ୍ଟୁମାମୁ ଓରଫ ନିକୁଞ୍ଜ କିଶୋର । ବଡ଼ମାମୁଙ୍କ ସ୍ୱଭାବ ସହିତ ମୁଷ୍ଟୁମାମୁଙ୍କର କୌଣସି ସାଦୃଶ୍ୟ ନଥିଲା । ବୋଉ ଭାଷାରେ ବଡ଼ମାମୁ ତ ଯୁଧିଷ୍ଠିର, ଶାନ୍ତଶିଷ୍ଟ, ଧୀର । ମାଛିକୁ ମ କହୁନଥିଲେ । କଲେଜରେ ପଢ଼ିବା ବେଳେ ପାଠପଢ଼ା ଛାଡ଼ି ଦେଇଥିଲେ ଅଧାରୁ । କେହି କେହି କହନ୍ତି, ୧୯୨୧ର ଅସହଯୋଗ ଆନ୍ଦୋଳନର ଧାସ ତାଙ୍କ ଠେଇଁ ବାଜିଥିଲା । କିନ୍ତୁ ସେ ସେହି ଆନ୍ଦୋଳନରେ ଯୋଗ ଦେଇ ନଥିଲେ । ମୁଷ୍ଟୁମାମୁ ଏକମାତ୍ର ମାମୁ ଯେ ବି.ଏ. ପାସ୍ କରିବା ଯାଏ ପାଠ ପଢ଼ିଥିଲେ । ତାଙ୍କର ବହୁମୁଖୀ ପ୍ରତିଭା ଥିଲା । କବିତା ରଚନା ଠାରୁ ଘୋଡ଼ା ଚଢ଼ିବା ଯାଏ ସେ ସବୁଥିରେ ପାରଙ୍ଗମ ଥିଲେ । ସେ ଲେଖିଥିବା ଗୀତ ଗୁଡ଼ିକ ଗାଇବା ପାଇଁ ଥିଲେ ରାଜା ନିମାଇ– ସ୍ୱନାମଧନ୍ୟ ନିମାଇ ହରିଚନ୍ଦନ । ୧୯୩୪ରେ କୁଳବୃଦ୍ଧ ମଧୁସୂଦନଙ୍କ ଶବଯାତ୍ରାରେ ହଜାର ହଜାର ଲୋକ । ପୁରୁଖା ଲୋକେ କହନ୍ତି, ସେପରି ଶୋଭାଯାତ୍ରା କଟକରେ ହୋଇନାହିଁ କି ହେବନାହିଁ । ମୁଷ୍ଟୁମାମୁଙ୍କ ଗୀତର ଭାଷା, ଭାବବିହ୍ୱଳ ରାଜା ନିମାଇଙ୍କ ଗମ୍ଭୀର ଉଦାର କଣ୍ଠସ୍ୱର, ଶବଯାତ୍ରୀଙ୍କ ଆଖିର ଅଶ୍ରୁଧାରା ଏକ ଅନିର୍ବଚନୀୟ ଅନୁଭୂତି ।

'ବାରୁଣୀ' ପତ୍ରିକା ବାହାରିଲା । 'ମୁହୂର୍ତ୍ତ ଜ୍ୱଳିତ ଶ୍ରେୟଃ' ବିଚାର ଅନୁସାରେ ଅଳ୍ପ କେତେ ସଂଖ୍ୟା ବାହାରି 'ବାରୁଣୀ' ବନ୍ଦ ହୋଇଗଲା । କିନ୍ତୁ ଓଡ଼ିଆ ସାହିତ୍ୟରେ ନିଜର ଛବିଟି ସୁରକ୍ଷିତ ରଖିଗଲା । 'ବାରୁଣୀ'ରେ ମୁଷ୍ଟୁମାମୁଙ୍କ କବିତା ଛାପା ହେଉଥିଲା । ତାକୁ ବୁଝିବାର ବୟସ

ମୋର ହୋଇନଥିଲା । ଶବ୍ଦ ବିନ୍ୟାସ ଓ ଅନୁପ୍ରାସ ହିଁ ନ ବୁଝି ପାରୁଥିଲେ ସୁଦ୍ଧା ବାଳୁତ ମନକୁ ମୋହିନିଏ । 'ଅକଲ ମକଲ ଝାଇଁକି ଝୁମ୍ପା'ର କି ଅର୍ଥ ଅଛି ? ମୁଷ୍ଟମାମୁଙ୍କ 'ମାୟାପୁରୀ ସୁନା କୋଠି ଚେଇଁ ଦେଲା କିଏରେ', 'ଛାର ଘୋଡ଼ା ନିଦମତା ନିକାଞ୍ଚନ ଦେଶେ' ଅଥବା 'ଶରତ ଆସିଛି ତାର ଦୋହଲା କାଇଁଶ ବଣେ ଶୁଭୁଛି ସରମଛୁଆଁ ଦରଫୁଟା ବାଣୀ' ଅକାରଣରେ ବାଳୁତମନକୁ ଆନ୍ଦୋଳିତ କରେ । ମୁଷ୍ଟମାମୁ କହନ୍ତି– 'ମୋତେ ବାପା ଡାକ୍' । ମୁଁ ମୋ ବାପାଙ୍କ ଛଡ଼ା ଆଉ କାହାରିକୁ ବାପା ଡାକିବାକୁ ରାଜି ହୁଏ ନାହିଁ । ଶେଷରେ ରଫା ହେଲା, ମୁଁ ତାଙ୍କୁ 'ସାନବାପା' ଡାକିଲି ।

ଉପମାମୁ ଆମ ମାମୁ । କାରଣ ଆମ ଅଜା ତାଙ୍କୁ ପୁଅ କରିଥିଲେ । ସେ କଟକରେ ଓ ସତ୍ୟଭାମାପୁରରେ ମଧ୍ୟ ରହୁଥିଲେ । ମାମୁଙ୍କ ସ୍ୱଭାବ ଆଉ ପ୍ରକାରେ । ଅତ୍ୟନ୍ତ ସ୍ନେହପ୍ରବଣ କିନ୍ତୁ ବହୁତ କମ୍ କଥା କହନ୍ତି । କେବେହେଁ ସେ ଉଚ୍ଛ୍ୱସିତ ହେବାର ଦେଖିନାହିଁ । କେମିତି ଗୋଟାଏ ଆତ୍ମସମାହିତ ଭାବ । ଛବି ଆଙ୍କନ୍ତି, ଗପ ଲେଖନ୍ତି । 'ମଲାଜହ୍ନ' ଉପନ୍ୟାସ ଲେଖି ଓଡ଼ିଆ ଭାଷାରେ ଗୋଟିଏ ନୂଆ ଶୈଳୀ ମଧ୍ୟ ସୃଷ୍ଟି କଲେ । ଗୀତା, ଉପନିଷଦ, ଭାଗବତରେ ପୂରା ଦଖଲ । ଅତ୍ୟନ୍ତ ସୌନ୍ଦର୍ଯ୍ୟପ୍ରିୟ– ତାଙ୍କ 'ଶିବାୟନ' ଘର ତାର ସାକ୍ଷୀ । ଗଛ ବୁରୁଛରେ ସଉକ । ଜାତିଜାତିକା ଫୁଲଗଛ ସତ୍ୟାଭାମାପୁରରେ ଲଗାଇଥିଲେ, ଯାହା କଟକରେ ତ ଦେଖିବାକୁ ମିଳୁନଥିଲା– ଓଡ଼ିଶା ବାହାରର ଲୋକେ ମଧ୍ୟ ଦେଖି ନାହାନ୍ତି ବୋଲି ସ୍ୱୀକାର କରୁଥିଲେ । ଯୋଉ କାମ ମାମୁ କରିବେ ତାକୁ କାହାରି ଅପସନ୍ଦ କରିବାର ସାଧ୍ୟ ରହିବ ନାହିଁ । ୧୯୩୦ରେ ଲବଣ ସତ୍ୟାଗ୍ରହ ବେଳେ ମାମୁ ଖଦୀ କାମ କରିଥିଲେ । ୧୯୩୨ରେ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ଆରମ୍ଭ ହେଲା ବେଳେ ସଭା, ଶୋଭାଯାତ୍ରାରେ ବୋଲିବା ପାଇଁ ମାମୁ ଗୀତ ଲେଖି ଆମକୁ ସ୍ୱରଧରି ଗୀତ ଶିଖାଇଲେ– "ଜାଗ ଜନପଦ ବାସୀ

ପତିରେ ବନ୍ଧୁ ତବଦ୍ୱାରେ ଆଜି ଲାଗି ଉପବାସୀ ।"

୧୯୩୮ରେ ଗାନ୍ଧୀ ସେବା ସଂଘ ସମ୍ମିଳନୀ ଡେଲାଙ୍ଗରେ ହେଲା । ସେଇଟା ଗୋଟାଏ ନିଖିଳ ଭାରତୀୟ ସମ୍ମିଳନୀ । ଓଡ଼ିଶାର ସର୍ବପ୍ରକାର ହସ୍ତଶିଳ୍ପର ଏକ ପ୍ରଦର୍ଶନୀର ଆୟୋଜନରେ ମାମୁ ଥିଲେ ମୁଖ୍ୟ ନିର୍ଦ୍ଦେଶକ । ୧୯୫୦ରେ ନିଖିଳ ଭାରତୀୟ ସ୍ତରର ସର୍ବୋଦୟ ସମ୍ମିଳନୀ ହେଲା । ତଦୁପଲକ୍ଷେ ହେଉଥିବା ପ୍ରଦର୍ଶନୀରେ ଓଡ଼ିଶାର ଇତିହାସର ଚିତ୍ରାବଳୀ ପ୍ରଦର୍ଶନ କରିବା କଥା ବାପା ମାମୁଙ୍କୁ କହିଲେ । ମାମୁ, ମୁରଲୀବାବୁ, ବିଭୂତିବାବୁ ପ୍ରମୁଖ ଓଡ଼ିଶାର ବିଶିଷ୍ଟ ଚିତ୍ରଶିଳ୍ପୀଙ୍କୁ ଏକତ୍ର କରି ଏହି ଚିତ୍ରାବଳୀ ପ୍ରସ୍ତୁତ କଲେ । ବର୍ତ୍ତମାନ ସୁଦ୍ଧା ଓଡ଼ିଶାର ରାଜଭବନରେ ଏହି ଛବିଗୁଡ଼ିକ ରହିଛି । ସେହିପରି ବିନୋବାଜୀଙ୍କ ଦ୍ୱାରା ସଂପାଦିତ ଭାଗବତ ଧର୍ମସାରର ସଂସ୍କୃତ ଶ୍ଳୋକଗୁଡ଼ିକ ଓଡ଼ିଆ ଭାଗବତରୁ ସଂକଳନ କରିବା କାମଟି ମଧ୍ୟ ମାମୁ ତୁଲେଇଲେ । ବାପା ମାମୁଙ୍କୁ ଯେତେବେଳେ ଯେଉଁ କାମ ତୁଲାଇବାକୁ କହୁଥିଲେ ମାମୁ ସେ କାମକୁ ଆନ୍ତରିକତା ସହକାରେ ତୁଲାଉଥିଲେ ।

ଦେବମାମୁ ଓରଫ ଦେବେନ୍ଦ୍ର କିଶୋର ଦାସ ମଧ୍ୟ ଅଧା ପାଠରୁ କଲେଜ ଛାଡ଼ିଥିଲେ । ମାମୁଙ୍କ ପରି ଦେବବାବୁ ମଧ୍ୟ ପୁଅ ହୋଇ ଯାଇଥିଲେ । ସେ ଅଭ୍ୟସ୍ତ ଭାବରେ ଖଦୀ ପିନ୍ଧୁଥିଲେ । ଦେବମାମୁ ଓ ବୋଉର ମାଉସୀ ପୁଅ ଭାଇ ଟୁଙ୍ଗୁ ମାମୁଙ୍କ ସାଙ୍ଗରେ ବୋଉ ଜାତୀୟ ଆନ୍ଦୋଳନ ଓ ଦେଶର ସମସ୍ୟା ବିଷୟରେ କଥାବାର୍ତ୍ତା କରୁଥିଲେ । କିନ୍ତୁ ମୁଷୁ ମାମୁ, ବେଙ୍ଗ ମାମୁ ଓ ବୋଉ ତିନିମାସ ଭିତରେ ବଡ଼ସାନ ଥିବାରୁ ସେମାନେ ଏକତ୍ର ହେଲେ ସେମାନଙ୍କ ପିଲାଦିନକୁ ଫେରି ଯାଉଥିଲେ । ଟୁଙ୍ଗୁମାମୁ ୧୯୩୦ରୁ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲେ ଏବଂ ୧୯୩୦ ଓ ୧୯୪୨ରେ କାରାଦଣ୍ଡ ମଧ୍ୟ ଭୋଗିଥିଲେ । ଟୁଙ୍ଗୁମାମୁ ଆମ ଭାଇଭଉଣୀଙ୍କ ସମବୟସ୍କ ସାଙ୍ଗ ଭଳି ଆମେ ସଙ୍ଗେ ମିଶୁଥିଲେ । ବାପାବୋଉ ଯେତେବେଳେ ଗାନ୍ଧୀଜୀଙ୍କ ନିର୍ଦ୍ଦେଶରେ ଗ୍ରାମାଞ୍ଚଳରେ ରହିଲେ, ଟୁଙ୍ଗୁମାମୁ ମଝିରେ ମଝିରେ ସେଠାକୁ ଯାଇ ସେ ବାଉଁଶ ପଲା ଦିଆ ଚାଳଛପର ମାଟି ଘରେ ରହୁଥିଲେ ଏବଂ ଖୁବ୍ ମନୋଯୋଗ ସହକାରେ ବାସନମଜା କାମ କରିବାକୁ ଚେଷ୍ଟା କରୁଥିଲେ । ୧୯୩୮ରେ ଗାନ୍ଧୀ ସେବା ସଂଘ ସମ୍ମିଳନୀ ବେଳକୁ ଟୁଙ୍ଗୁମାମୁ ମନ୍ତ୍ରୀ ପଦରେ ଥିଲେ । ସେ ସ୍ୱେଚ୍ଛାରେ ବାପାଙ୍କୁ ଚିଠି ଲେଖିଲେ ଯେ ସେ ସମ୍ମିଳନୀରେ ପାଇଖାନା ସଫା କାମ କରିବେ । ପାଇଖାନା ପାଇଁ ସମ୍ମିଳନୀରେ ବାଲଟି ବ୍ୟବହୃତ ହେଉଥିଲା । ମାଟିରେ ଗାତ ଖୋଳି ସେ ମଳକୁ ପୋତାଯାଉଥିଲା । ଅତିଥିମାନଙ୍କ ଖାତିରରେ ଦିନରେ ତିନିଥର ଏହି ବାଲଟି ରକ୍ଷାକାମ କରାଯାଉଥିଲା । ଟୁଙ୍ଗୁମାମୁ, ବିନୋଦ କାନୁନଗୋ ଓ କଲ୍ୟାଣପୁରର ଲାଲବିହାରୀ ପଟ୍ଟନାୟକ ଏ କାମକୁ ଦକ୍ଷ ମେହେନ୍ତର ଭାବରେ ତୁଲାଉଥିଲେ ।

ନଗିମାମୁ ଓରଫ ନଗେନ୍ଦ୍ର କିଶୋର ଦାସଙ୍କର ଛାତିରେ କଣ ଗୋଟାଏ ରୋଗ ହୋଇଥିଲା । ଯାହା ଫଳରେ ସେ ଆମ ଦେଖନ୍ତେ ସବୁଦିନେ ଦୁର୍ବଳ ଥିଲେ । ଏହି ଦୁର୍ବଳତା ହେତୁ ସେ ବି.ଏ. ପରୀକ୍ଷା ଦେଇ ନପାରି କଲେଜ ଛାଡିଲେ । ଦଶରାରେ ଆମମାନଙ୍କୁ ସାଙ୍ଗରେ ନେଇ କୋହିନୂର ଷ୍ଟୋର ବିଲିମୋରିଆକୁ ଯାଇ ସେ କଳ୍ପତରୁ ହୋଇଯାଉଥିଲେ । ଅର୍ଥାତ୍ ଆମେ ସେ ଦୋକାନରୁ ଯାହା ନେବାକୁ ଚାହୁଁଥିଲୁ ତାହା ଆମକୁ ମିଳିଯାଉଥିଲା । ଏବେ ବୁଝୁଛି କି ପ୍ରକାର ପ୍ରଶ୍ରୟ ସେ ଆମକୁ ଦେଉଥିଲେ । ନରିମାମୁ ଓରଫ ନରେନ୍ଦ୍ର କିଶୋର ଦାସ ଇଞ୍ଜିନିୟରିଂ ସ୍କୁଲ୍‌ରେ ପଢୁଥିଲେ । ସେ ମଧ୍ୟ ଅଧାରୁ ପାଠଛାଡ଼ି କିଶୋର ଟ୍ରାନସ୍‌ପୋର୍ଟରେ ଯୋଗ ଦେଲେ ।

ମଙ୍ଗୁମାମୁ ଓ ମଣ୍ଟୁମାମୁ ତ ଆମ ଖେଳ ସାଙ୍ଗ । ମାମୁ ବୋଲି ଡାକୁଥିଲୁ, ମାତ୍ର ମନରେ ତାଙ୍କୁ ମାମୁ ଦୃଷ୍ଟିରେ ଦେଖୁ ନଥିଲୁ ।

ମାମୁମାନେ କେହି ଚାକିରି କରି ନଥିଲେ । କଟକ-କେନ୍ଦ୍ରାପଡ଼ା ଲଞ୍ଚ୍ ସର୍ଭିସ୍, ଏକ୍‌ଶି ଥିଏଟର, କିଶୋର ଟ୍ରାନ୍ସପୋର୍ଟ ଆଦି ନାନା ପ୍ରକାର ବ୍ୟାବସାୟିକ ଧନ୍ଦାରେ ସେମାନେ ସଂପୃକ୍ତ ଥିଲେ । ମୁଷୁମାମୁ କିଛିକାଳ ଉତ୍କଳ ଟ୍ୟାନେରୀର ପରିଚାଳକ ହୋଇଥିଲେ । ଡିଷ୍ଟ୍ରିକ୍ଟ ବୋର୍ଡ ଚେୟାରମ୍ୟାନ ମଧ୍ୟ ସେ ହୋଇଥିଲେ ବୋଲି ମନେପଡୁଛି । ଦେବମାମୁ ଲୋକାଲବୋର୍ଡ଼ ଚେୟାରମ୍ୟାନ୍ ହୋଇଥିଲେ । ଦେବମାମୁ ଥରେ ବିଧାନସଭାର ସଦସ୍ୟ ହେବା ପାଇଁ ମଧ୍ୟ

ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ପ୍ରତିଦ୍ୱନ୍ଦ୍ୱୀ ଥିଲେ ନବକୃଷ୍ଣ ଚୌଧୁରୀ । ସେହିପରି ବାପା ଡିଷ୍ଟ୍ରିକ୍ଟ ବୋର୍ଡ଼ର ସଦସ୍ୟ ପଦ ପାଇଁ ପ୍ରାର୍ଥୀ ହେଲାବେଳେ ବଡ଼ଜେଜେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ । ମାତ୍ର ପାରିବାରିକ ସୁସମ୍ପର୍କରେ ଏସବୁ ଘଟଣା କୌଣସି ବ୍ୟାଘାତ ସୃଷ୍ଟି କରି ନଥିଲା ।

ଏହି ମାମୁମାନଙ୍କ ସ୍ନେହ ସୁଧାରେ ରଂଜିତ ହୋଇ ଆମେ 'ମାମୁଘର ସୁଖ' ଉପଭୋଗ କରିଥିଲୁ । ମାମୁମାନେ ନାହାନ୍ତି, ମାତ୍ର ସେମାନଙ୍କ ସାନ୍ନିଧ୍ୟର ମଧୁର ସ୍ମୃତି ବର୍ତ୍ତମାନ ସୁଦ୍ଧା ଆମ ଜୀବନକୁ ସଂଜୀବିତ କରୁଛି । ଆମଘର ଅର୍ଥାତ୍ ଚୌଧୁରୀ ପରିବାର ସହିତ ମାମୁଘରର ସଂପର୍କଟା ବାପାବୋଉଙ୍କ ବିଭାଘରର ବହୁପୂର୍ବରୁ ସ୍ଥାପିତ ହୋଇଥିଲା । ଆମ ଜେଜେ ଗୋକୁଳାନନ୍ଦ ଚୌଧୁରୀ ଥିଲେ ଗୋପାଳ ବଲ୍ଲଭ ଦାସଙ୍କ ପାଠସାଙ୍ଗ । ଓକିଲାତି ପଢ଼ିସାରିଲା ପରେ ସେ ହେଲେ ମଧୁସୂଦନ ଦାସଙ୍କ ଜୁନିଅର୍ । ଆଇନ୍ ବ୍ୟବସାୟରେ ପ୍ରତିଷ୍ଠିତ ହେବା ପରେ ସେ ସପରିବାର କଟକରେ ରହିଲେ । ଜେଜେମା' ସେତେବେଳେ କଟକର ସବୁ ନୂଆ ସମାଗତ ହାକିମଙ୍କ ସହଧର୍ମିଣୀମାନଙ୍କର ମୁରବୀ ହୋଇ ଯାଇଥିଲେ । ମୋ ମା' (ପିତାମହୀ) କଟକ ଆସିବା ପରେ ଜେଜେମା'ଙ୍କ ପାଲରେ ପଡି ତାଙ୍କର ଧର୍ମଝିଅ ହେଲେ ଏବଂ ତାଙ୍କ ଝିଅମାନେ ବୟସରେ ସାନ ହୋଇଥିବାରୁ ସେମାନଙ୍କ ଉପରେ ବଡ଼ଭଉଣୀ ପଣିଆ ଜାହିର କଲେ । ସେମାନେ ମୋ ମା'ଙ୍କୁ ଚୌଧୁରାଣୀ ଡାକୁଥିଲେ ଏବଂ ସ୍ନେହ କରୁଥିଲେ । ମୋ ମା ଥିଲା ସେତେବେଳେ ସାମାଜିକ ଓ ପୂଜାପାଠ, ଓଷାବାରର ନୀତି ନିୟମର ବିଧାୟିକା । ସେ ନୀତିନିୟମ ମଧ୍ୟ ବିଚିତ୍ର । ଦିନେ ମାମୁଘର ଶିବ ମନ୍ଦିରରେ ମୋ ଆଈ (ଆମେ ତାଙ୍କୁ ବଡ଼ମା' ଡାକୁଥିଲୁ) ଓ ବୋଉମଝିଆଁ ମାଇଁ କାର୍ତ୍ତିକ ମାସ ହବିଷ୍ୟାନ୍ନ ଖାଉଥିଲେ । ମୋ ମା ସେତେବେଳେ ସେଠାକୁ ବୁଲି ଆସିଲା । ଆମେ ପିଲାମାନେ କାପ୍ତାକାପ୍ତି ପତ୍ର ଖାଇବା ପାଇଁ ସେଠାରେ ହାଜର ଥିଲୁ । ମୋ ମାଆ ହବିଷ୍ୟପତ୍ରରେ ଲଙ୍କାମରିଚ ପରଷା ହୋଇଥିବାର ଦେଖି କହିଲା– "ବେଙ୍ଗବୋଉ, ତମେ କାର୍ତ୍ତିକ ହବିଷ୍ୟରେ କାଉଗୋଡ଼ ଖାଉଚ ?" ବୋଉ ମଝିଆଁ ମାଇଁଙ୍କ ମୁଣ୍ଡ ଉପରେ ଆକାଶ ଛିଣ୍ଡି ପଡ଼ିବା ପରି ତାଙ୍କର ପ୍ରତିକ୍ରିୟା ହେଲା । ସେ ମୋ' ଆଇଙ୍କୁ କହିଲେ– "ଆଁ ଗୋ ପାଇ ! ଚୌଧୁରାଣୀ ଯାହା କହୁଛନ୍ତି ସତରେ କ'ଣ ଲଙ୍କାମରିଚ କାଉଗୋଡ଼ ? ଏକି ବିଡ଼ବଣ (ବିଡ଼ମ୍ବନା ?) ।" ମୋ ଆଈ ଅନାସକ୍ତ ଭାବରେ କହିଲେ– "କେଜାଣି ମୁଁ ଜାଣେ ନାହିଁ ।" ଧର୍ମକର୍ମରେ କାଳେ କୋଉଠି ଟିକିଏ ଅନାଚାର ହୋଇଯିବ ସେଥିପାଇଁ ବୋଉମଝିଆଁ ମାଇଁ ସବୁବେଳେ ସନ୍ତ୍ରସ୍ତ ହୋଇ ରହୁଥିଲେ ।

ଧୀରେ ଧୀରେ ମାଇଁମାନେ ଆସିଲେ । ବଡ଼ମାମୁଙ୍କ ବିଭାଘର କୁମୁଡ଼ା ଜୟପୁରରେ ହୋଇଥିଲା । ମୁଁ ବୋଉ ସାଙ୍ଗରେ ସେ ବିଭାଘରକୁ ଯାଇଥିଲି । କିନ୍ତୁ ମୋର ସେଠା କଥା କିଛି ମନେ ନାହିଁ । ବୋଉ ଠାରୁ ଶୁଣିଛି ସେ ବର୍ଷ ସେ ଅଞ୍ଚଳରେ ଅକାଳ ପଡିଥିଲା । ଲୋକେ ଖାଦ୍ୟାଭାବ ହେତୁ ଥିଲାବାଲାଙ୍କ ଦ୍ୱାରସ୍ଥ ହୋଇଥିଲେ । ବଡ଼ଜେଜେ କୁଆଡ଼େ ତହସିଲଦାରଙ୍କୁ ଆଦେଶ ଦେଲେ, ଅମାରରେ ଯେତେ ଧାନ ଅଛି ସବୁ କୁଟା ହୋଇ ଲୋକଙ୍କ ପାଇଁ ରନ୍ଧାଇ

ଖାଇବାକୁ ଦିଅ । ଭୋଜନ କେନ୍ଦ୍ର ଆରମ୍ଭ ହେଲା । କିଛି ଦିନ ପରେ ଗାଁରେ କଦଳୀ ପତ୍ର, ପଦ୍ମପତ୍ର ଆଉ ରହିଲା ନାହିଁ । ସିମେଣ୍ଟ ପଲସ୍ତରା ହୋଇଥିବା ବାରଣ୍ଡାକୁ ଧୋଇ ସେଇଥିରେ ଲୋକେ ଭାତ ଖାଇଲେ । ବୋଉ ପ୍ରଭୃତି ସେଠୁ ବିଦା ହେଲାବେଳକୁ ସବୁ ଲୁଗା ବାଣ୍ଟିଦେଇ ଏକବସ୍ତ୍ରରେ ଆସିଲେ । ମାଳ ଅପାଙ୍କ ବିଭାଘର ମଧ କୁମୁଡ଼ା ଜୟପୁରରେ ହୋଇଥିଲା । ମାଳ ଅପାଙ୍କ ଶ୍ୱଶୁର ବୈଷ୍ଣବ ହୋଇଥିବାରୁ ତାଙ୍କ ଘରେ ଆମିଷ ନିଷିଦ୍ଧ ଥିଲା । ବଡ଼ଜେଜେ କୁଆଡ଼େ ନିର୍ବନ୍ଧ ପୂର୍ବରୁ ତାଙ୍କୁ କହିଲେ– ମୋ ଝିଅ ଆଇଁଷ ଖାଇବାରେ ଅଭ୍ୟସ୍ତ । ସେ କିପରି ଚଳିବ ? ଭାବୀ ଶ୍ୱଶୁର କୁଆଡ଼େ କହିଥିଲେ, ସେ ଚାହିଁଲେ ଆଇଁଷ ଖାଇ ପାରିବେ ।

ବଡ଼ମାଇଁ ଚଉଦବର୍ଷ ବୟସରେ ବୋହୂ ହୋଇ ଆସିଥିଲେ । ତାଙ୍କ ବୋହୂପଣିଆ କଥା ମୋତେ ଜଣାନାହିଁ । କିନ୍ତୁ ବଡ଼ ମାଇଁଙ୍କର ନୂଆ କଥା ଜାଣିବାର ଓ ଶିଖିବାର ଇଚ୍ଛା ପ୍ରବଳ ଥିଲା । ବୋଉ ଶିଖାରେ ପଡ଼ି ସେ ଓ ନୂଆ ମାଇଁ ଖଦି ପିନ୍ଧିଲେ ଓ ପିଲାଙ୍କୁ ମଧ ପିନ୍ଧାଇଲେ । ବୋଉ ଯେତେବେଳେ ୧୯୩୨-୩୩ରେ ରାଷ୍ଟ୍ରଭାଷା ପ୍ରଚାର କାମ କଲା, ବଡ଼ମାଇଁ ଓ ନୂଆ ମାଇଁ ପଣ୍ଡିତ ଅନୁସୂୟା ପ୍ରସାଦ ପାଠକଙ୍କ ପାଖରେ ହିନ୍ଦୀ ପଢ଼ିଲେ । ବଡ଼ମାଇଁଙ୍କ ସ୍ମୃତି ଶକ୍ତି ପ୍ରଖର ଥିଲା । ଓଡ଼ିଆ ଭାଷାରେ ମଧ ଦଖଲ ଥିଲା । ଅଣଓଡ଼ିଆ, ପାର୍ସି, ଆରବୀ ଆଦି କେଉଁ ଶବ୍ଦ ଓଡ଼ିଆରେ, ପ୍ରାଚୀନ ଓଡ଼ିଶାରେ ସୁଦ୍ଧା ପଶିଯାଇଛି, ବଡ଼ମାଇଁ ତାକୁ ଖୋଜି କାଢ଼ନ୍ତି ।

ନୂଆ ମାଇଁଙ୍କର ହସ୍ତାକ୍ଷର ସୁନ୍ଦର । ବିଭା ହେଇ ଆସିଲାବେଳେ ନୂଆ ମାଇଁଙ୍କୁ ଚଳେଇବା ପାଇଁ ତାଙ୍କ ସାଙ୍ଗରେ ଆସେଲି ଧାଈ ଆସିଥିଲେ । ସେ ତାଙ୍କର ନିତ୍ୟକର୍ମ ଠାରୁ ଆରମ୍ଭ କରି ସବୁ କଥା ବୁଝୁଥାନ୍ତି । ନୂଆ ମାଇଁଙ୍କର ନିଜକୁ ଚଳେଇବା ଜ୍ଞାନ ହେବା ପୂର୍ବରୁ ତାଙ୍କୁ ବିଭା କରି ଦିଆ ହେଇଛି ବୋଲି କେହି କେହି ମତପ୍ରକାଶ କରୁଥାନ୍ତି । ବଡ଼ମାଇଁ ଓ ନୂଆମାଇଁ ଦୁଇଜଣ ଯାକ ରନ୍ଧାବଢ଼ା ଆଦି ଗୃହକୃତ୍ୟରେ ବି ଆଗ୍ରହୀ ଥିଲେ । କଟକ ମାଇଁ ଏମାନଙ୍କ ତୁଳନାରେ ଟିକିଏ ଅଧିକ ବୟସରେ ବିଭା ହୋଇଥିଲେ । ସେଥିପାଇଁ ବଧୂଜନୋଚିତ ଅନେକ କାମ ତାଙ୍କୁ ଜଣାଥିଲା । ବୋହୂପଣିଆଟା ଗୋଟାଏ ରୀତିମତ ସାଧନା କହିଲେ ଚଳେ । ମାଇଁମାନଙ୍କ ବୋହୂପଣିଆ ମୁଁ ଦେଖିଛି । ଘରେ ସମସ୍ତେ ଉଠିବା ଆଗରୁ ବୋହୂ ଗାଧୋଇ ଆସି ଠାକୁର ଘର ଧୋଇବେ । ଶୀତଦିନ ହୋଇଥିଲେ ଲଣ୍ଠନରେ ହାତସେକି ଶାଶୁ ନଣନ୍ଦଙ୍କ ଗୋଡ଼ ଘଷି ଦେବେ । ଫୁଲଗୁନ୍ଥାରେ ନାନାପ୍ରକାର କାରିଗରି ଦେଖେଇବେ । ଶାଶୁ ଗାଧୋଇ ଆସିଲେ (ପ୍ରତିଦିନ) ତାଙ୍କ ଗୋଡ଼ ଧୋଇ ଦେଇ ଦଣ୍ଡବତ ହେବେ । ନାନା ଆକୃତିର ନାନା ପ୍ରକାର ପାନ ଭାଙ୍ଗିବେ । ଯେଉଁମାନେ ପାନ ଖାଇବେ ନାହିଁ ତାଙ୍କ ପାଇଁ ଗୁଆକୁ ପାଣିରେ ବତୁରେଇ ତାକୁ ସିମେଇ ପରି ଖୁବ୍ ସରୁ ସରୁ, ଲମ୍ବା ଲମ୍ବା କରି କାଟି ସେଥିରେ ଧନିଆ ଚାଉଳ, ଅଳେଇଚ, ଗୁଜୁରାତି ଦାନା ଆଦି ମସଲା ମିଶାଇ ଦେଖିବେ । କଷିନଣନ୍ଦ ଓ ଭାଣିଜୀଝିଆରୀମାନଙ୍କ ମୁଣ୍ଡ କୁଣ୍ଡେଇ ଦେଇ ଭଳିକି ଭଳି ବେଣୀ ପାରିଦେଇ ତାଙ୍କୁ ସଜେଇବେ । ଏଇ ମୁଣ୍ଡ କୁଣ୍ଡାଇବା ଶାସ୍ତିଟା ମାଇଁମାନଙ୍କ ଠାରୁ ମୁଁ ପାଇଛି । ଗୋଟାଏ ଗାମୁଛା ଓଦା କରି ମୁଣ୍ଡ ଉପରେ ପକାଇ ତାକୁ ଟାଣି ଟାଣି ଚୁଳକୁ

ଭଳିକି ଭଳି ଆକାରରେ କପାଳ ଉପରକୁ ଟାଣି ଅଣାହୁଏ । ଏହାକୁ ସେମାନେ ପାତି ପକେଇବା କହୁଥିଲେ । ତା'ପରେ ପୁଣି ପଛପଟ ବେଣୀସଜା ଆରମ୍ଭ ହୁଏ । ଦାଣ୍ଡରେ ଡିଆଁଡେଇଁ କରିବା ପାଇଁ ପ୍ରାଣ ଛଟପଟ ହେଉଥିବା ବେଳେ ଏ ପ୍ରକ୍ରିୟାଟା କାରାଦଣ୍ଡ ପରି ବୋଧ ହୁଏ । ପୁଣି ଘରେ କୌଣସି ଉତ୍ସବ ବା କୁଆଁର ପୂନେଇ ବା ରଜ ପରି ଓଷା ଥିଲେ ଦେହରେ ବଛାବଛା ସୁନ୍ଦର ସୁନ୍ଦର ଗହଣା ମଧ୍ୟ ଲଦି ଦିଆଯାଏ । ସେତେବେଳେ ସଖୀ କଣ୍ଢେଇ ପରି ବସି ରହିବା ଛଡ଼ା ଅନ୍ୟ ଉପାୟ ନଥାଏ । କଟକ ମାଇଁ ଏସବୁ ବୋହୂପଣିଆରେ ଏବଂ ମାଂସ ତରକାରୀ ରାନ୍ଧିବାରେ ଖ୍ୟାତନାମା ଥିଲେ । ସେଇଟା ବୋଧହୁଏ ସେ ତାଙ୍କ ବାପା ବ୍ରଜସୁନ୍ଦର ଦାସଙ୍କ ଠାରୁ ଉତ୍ତରାଧିକାର ସୂତ୍ରରେ ପାଇଥିଲେ । ବ୍ରଜସୁନ୍ଦର ଦାସ 'ମୁକୁର' ମାସିକ ପତ୍ରିକାର ସମ୍ପାଦନା, ଉତ୍କଳ ସମ୍ମିଳନୀ, ଦେଶ ମିଶ୍ରଣ ଆଦି କାମରେ ଯେତିକି ପାରଙ୍ଗମ ଥିଲେ, ରୋଷେଇ ଓ ପାନ ଭଙ୍ଗାରେ ସେତିକି ଦକ୍ଷତା ଅର୍ଜିଥିଲେ । ରୋଷେଇଟା ଅବଶ୍ୟ ସେ ନିଜେ କରନ୍ତି ନାହିଁ । ବୋଉ କହୁଥିଲା, ସେ ଆରାମ ଚୌକୀରେ ବସି ଖବର କାଗଜ ପଢ଼ନ୍ତି ଓ କେତେବେଳେ କେଉଁ ପରିବା କିପରି ସନ୍ତୁଳା ହେବ ଆଦି ରାନ୍ଧୁଣିଆକୁ ବରାଦ କରନ୍ତି । ସାନଝିଅମାନଙ୍କୁ ସଣ୍ଢୁଣା ଶିଖାଇବା ମଧ୍ୟ ବୋହୂପଣିଆର ଅଂଶ । ଚନ୍ଦନ କାମ, ମୁରୁଜ ପକାଇବା, ଚିତା ଲେଖିବା, ଲୁଗା କୁଉଁଞ୍ଚେଇବା, ଠାଆ ଭାଙ୍ଗିବା ଆଦି ବୋହୂପଣିଆର ଅଂଶ । ଆମ ମାଇଁ ଓ କୁନି ମାଇଁ (ନିତ୍ୟାନନ୍ଦ କାନୁନଗୋଙ୍କ ସହଧର୍ମିଣୀ) ଏହି ଚନ୍ଦନକାମ ଆଦିରେ ନିପୁଣ ଥିଲେ । ଥରେ ଜଣେ ବିଦେଶୀ ମହିଳା ଓଡ଼ିଆଣୀଙ୍କର ଚାରୁକଳା ଦେଖିବାକୁ ଇଚ୍ଛା ପ୍ରକାଶ କଲେ । ବୋଉ କୁନିମାଇଁଙ୍କୁ ଚନ୍ଦନକାମ କରି ଦେବାକୁ କହିଲା । କାଠି ଖଣ୍ଡକରେ ଏପରି ସୂକ୍ଷ୍ମ କାରିଗରୀ ଦେଖି ସେ ମହିଳା ଚମତ୍କୃତ ହେଲେ । ପିଠା ଗଢ଼ିବା ମଧ୍ୟ ବୋହୂପଣିଆର ଗୋଟାଏ ପାଠ୍ୟକ୍ରମ ।

କଡ଼ାଙ୍ଗ ମାଇଁ ଅର୍ଥାତ୍ କଡ଼ାଙ୍ଗକୁ ପୁଅ ହୋଇ ଯାଇଥିବା ଦେବମାମୁଙ୍କ ସହଧର୍ମିଣୀଙ୍କର ବୈଶିଷ୍ଟ୍ୟ ଥିଲା ରୋଗୀ ପରିଚର୍ଯ୍ୟା କରିବାରେ । ତାଙ୍କ ହାତଗୋଡ଼ ଚଳୁଥିବା ଯାଏ କେହି ଆତ୍ମୀୟ ଅସୁସ୍ଥ ହେଲେ କଡ଼ାଙ୍ଗ ମାଇଁଙ୍କୁ ତାଙ୍କ ପାଖରେ ରହିବାକୁ ପଡୁଥିଲା । ଆମ ମାଇଁଙ୍କର ଥିଲା ଲଳିତ କଳା ଓ ବହିପଢ଼ାରେ ଶରଧା । ମାମୁଁଙ୍କ ଠାରୁ ଶିଖି ସେ ଛବି ମଧ୍ୟ ଆଙ୍କୁଥିଲେ । ପାଟପୁର ମାଇଁ ଥିଲେ ମୋ ଆଈଙ୍କର ଦକ୍ଷିଣହସ୍ତ । ସେ ସବୁବେଳେ ଆଈଙ୍କ ପାଖେ ପାଖେ ରହି ତାଙ୍କ କାମରେ ସାହାଯ୍ୟ କରିବାରେ ଆନନ୍ଦ ପାଉଥିଲେ । କଡ଼ାଙ୍ଗ ମାଇଁ କିନ୍ତୁ ସବୁଦିନେ କଟକରେ ରହୁନଥିଲେ । ସେ ମଝିରେ ମଝିରେ କଡ଼ାଙ୍ଗରୁ ଆସନ୍ତି । ଅନେକ ସମୟରେ ମ୍ୟାଲେରିଆର ଶିକାର ହେବାପରେ ଆସନ୍ତି । ଥରେ କଡ଼ାଙ୍ଗ ମାଇଁଙ୍କର ଜ୍ୱରର ଉତ୍ତାପ ୧୦୩ଂ ଉଠିଗଲା । ସେ ବାଉଳାଚାଉଳା ହେଉଥାନ୍ତି । ସେତିକିବେଳେ ମିନିର ମଧ୍ୟ ପେଟ ଖରାପ ହୋଇଥାଏ । ସେହି ବାଉଳାଚାଉଳା ଅବସ୍ଥାରେ କଡ଼ାଙ୍ଗ ମାଇଁ ମିନିକୁ ଗୋଟାଏ ଡାଳିମ୍ବର ଦାନା ମଞ୍ଜି ସହିତ ଖୁଆଇ ଦେଲେ । ମିନିର ପେଟ ଫାମ୍ପି ନାଖରା ହୋଇଗଲା । ଗୃହ ଚିକିତ୍ସକ ଆସି ମା ଝିଅ ଦୁହିଁଙ୍କ ଚିକିତ୍ସା ଆରମ୍ଭ କରିଦେଲେ । ମୋ ମାଉସୀ ପୁଅ ଭାଇ ଟୁଆଁ ସେତିକି ବେଳେ ମିନି

ନାଆଁରେ ପଦ୍ୟ ରଚନା କଲା– "ଫାଉଣ୍ଡୀ ! ଚୂଡ଼ାଖାଇ ଆଉଣ୍ଡୀ ।" ମିନି ସୁସ୍ଥ ହେବା ପରେ ମଧ୍ୟ ଆମେ ତାକୁ ଅନେକ ଦିନଯାଏ ଫାଉଣ୍ଡୀ ଡାକିଲୁ ।

ମିନି ତ ଭଲ ହେଲା; କଡ଼ାଙ୍ଗ ମାଈଁଙ୍କର ମଧ୍ୟ ଜ୍ୱର ଛାଡ଼ିଲା । କିନ୍ତୁ ତାଙ୍କର ମସ୍ତିଷ୍କ ବିକୃତି ଦେଖାଦେଲା । ବଡ଼ମା' କବିରାଜୀ, ଡାକ୍ତରୀ, ହୋମିଓପ୍ୟାଥୀ ଟୁଟକାଟୁଟକୀ ଚିକିତ୍ସା କରି ହାର୍ ମାନିଲାବେଳେ ଈଶ୍ୱରପ୍ରେରିତ ଭଳି ଜଣେ ବଂଗାଳୀ ଭଦ୍ରମହିଳା ଆସି ତାଙ୍କୁ କହିଲେ, ରୋଗୀଙ୍କୁ ପ୍ରଚୁର ଘୋଳ ପିଆଅ । ସେ ଭଲ ହୋଇଯିବ । ସତକୁ ସତ ଘୋଳ ପିଇ ପିଇ କଡ଼ାଙ୍ଗ ମାଈଁ ପୂରାପୂରି ଭଲ ହୋଇଗଲେ ।

ଛୁଆମାଈଁ ନରିମାମୁଙ୍କ ପତ୍ନୀ ସୁରସୁନ୍ଦରୀ ମୋ' ଠାରୁ ବୟସରେ ସାନ ଥିଲେ । ବାଳିକା ବଧୂର ସ୍ଥିତି କିପରି ହୋଇଥାଏ ଛୁଆମାଈଁଙ୍କୁ ଦେଖି ମୁଁ କଳିପାରିଲି । ବିବାହ ବ୍ୟାପାର ବାବଦରେ ତାଙ୍କର କୌଣସି ଆଗ୍ରହ ବା ଜ୍ଞାନ ନଥିଲା । କଣ୍ଢେଇ ଖେଳୁ ଖେଳୁ ଏହି ଅଳଙ୍କାର କଣ୍ଢେଇକୁ ଶାଶୁଘରକୁ ବିଦା କରି ଦିଆଗଲା । ସମ୍ପୂର୍ଣ୍ଣ ଅପରିଚିତ ପରିବେଶ, ଖାଦ୍ୟପେୟ, ଚାଲିଚଳଣ, କଥାଭାଷା ସବୁ ଅଜଣା । ତାଙ୍କ ସାଙ୍ଗରେ ଆସିଥିବା ବୀମା ଧାଈ ବା ଦାସୀ ତାଙ୍କର ରକ୍ଷାକବଚ ହୋଇଥାଏ । ମୋର ସମବୟସୀ ହୋଇଥିବାରୁ ଆମେ ଦୁହେଁ ଖୁବ୍ ସାଙ୍ଗ ହୋଇଥିଲୁ । ଛୁଆମାଈଁ ଏତେ ସରଳ ଥିଲେ ଯେ ୧୯୩୨ରେ ଯେତେବେଳେ ମୁଁ ଜେଲ୍‌ରେ ରହିଲି ସେ ମୋ ବିରହ ସହି ନପାରି ଜେଲ୍ ଯିବାପାଇଁ ଅଝଟ ହେଲେ । ମାମୁଙ୍କର ବୋହୂ ଜେଲ୍ ଯିବାଟା ଏକ କଳ୍ପନାତୀତ ବ୍ୟାପାର । ଶେଷରେ ମୋ ଆଈ ତାକୁ ସାଙ୍ଗରେ କଟକ ଜେଲ୍‌କୁ ନେଇଯାଇ ମୋ ସହିତ 'ମୁଲାକାତ' କରାଇବାରୁ ସେ ସୁସ୍ଥିର ହେଲେ ।

ଛୁଆମାଈଁଙ୍କ ବାପଘର ପଞ୍ଚୋଟଗଡ଼ । ଥରେ ତାଙ୍କ ବାପଘରୁ ତାଙ୍କ ଜେଜେ ଓ ଆଉ ଅନେକେ ଛୁଆମାଈଁଙ୍କୁ ଦେଖିବାକୁ ଆସିଥିଲେ । ସେ ବଡ଼ଜେଜେଙ୍କୁ କହିଲେ– ମୁଁ ଆପଣଙ୍କ ଘର ବିଷୟରେ ଦୁଇଟି କଥା ଶୁଣିଛି । ପ୍ରଥମ କଥାଟି ହେଲା– ଆପଣଙ୍କ ଭଉଣୀ (ମୋ ଆଈ) ରାନ୍ଧିବାରେ ପାରଦର୍ଶୀ । ଦ୍ୱିତୀୟଟି ହେଲା– ଆପଣଙ୍କ ଘରେ ସୁନ୍ଦର ସୁନ୍ଦର ଗହଣା ଅଛି । ଏ ଦୁଇଟିଯାକରେ ମୋର ଆଗ୍ରହ । ବଡ଼ଜେଜେ ଅନ୍ଦର ମହଲରେ ଏହା କହିବାରୁ ତୁରନ୍ତ ବଡ଼ମା'ଙ୍କ ପାକଶାଳା ସରଗରମ ହୋଇ ଉଠିଲା । ପୂଜାରୀମାନଙ୍କ ରୋଷେଇଘର ଛଡ଼ା ବଡ଼ମା'ଙ୍କର ଗୋଟାଏ ଖାସ୍ ରନ୍ଧାଘର ଥିଲା । ସେଠି ସେ ପ୍ରତିଦିନ ନିୟମିତ କିଛି ନା କିଛି ରାନ୍ଧୁଥିଲେ । ମାଈଁମାନେ ବିଶେଷରେ କଡ଼ାଙ୍ଗମାଈଁ ଓ ସାନମାଈଁ ଥିଲେ ତାଙ୍କର ସହକାରୀ । ଜାଣି ବ୍ୟଞ୍ଜନ ଦ୍ୱାଦଶୀ ସମାରୋହ ।

ଏବେ ଗହଣା ପ୍ରଦର୍ଶିତ ହେବ କେମିତି ? ଗହଣାବାଲା ତାଙ୍କ ଆଗରେ ଠୁଳ କରି ମେଲେଇ ଦେବାଟା ସୁରୁଚିର ପରିଚାୟକ ହେବ ନାହିଁ । ତେଣୁ କଟକ ମାଈଁ ଓ ଆମ ମାଈଁଙ୍କୁ କୁହାଗଲା, ସେ ଦୁହେଁ ସୁନ୍ଦର ସୁନ୍ଦର ଗହଣା ବାଛି ଛୁଆମାଈଁ ସୁରସୁନ୍ଦରୀଙ୍କୁ ପିନ୍ଧେଇ ସଜେଇ ଦେବେ । ତାଙ୍କ ସା'ନ୍ତ ବାପା ତାଙ୍କୁ ଦେଖିବାକୁ ଆସିବାବେଳେ ଗହଣା ମଧ୍ୟ ଦେଖିବେ । ବିଚାରୀ ଛୁଆ

ମାଇଁ ଅଷ୍ଟଅଳଙ୍କାର ମଣ୍ଡିତା ହୋଇ ହଲିଚଳି ପାରିଲେ ନାହିଁ । ଆଜିକାଲି ଗହଣା ଦୋକାନରେ ଠାଏ ଠାଏ ଯେ ମୂର୍ତ୍ତି ପ୍ରଦର୍ଶିତ ହୋଇଥାଏ ତାକୁ ଦେଖିଲେ ମୋର ଛୁଆ ମାଇଁଙ୍କ ଦୁର୍ଦ୍ଦଶା ମନେ ପଡ଼ିଯାଏ । ସମସ୍ତଙ୍କର ମଣିମାଣିକ୍ୟଖଚିତ ଗହଣା ଠୁଳ ହେଲା । ମାଇଁ ଦୁହେଁ ସେଥିରୁ ଗହଣା ବାଛିଲେ । ଛୁଆ ମାଇଁଙ୍କର ସ୍ୱଳ୍ପ କେଶ ହେତୁ କୃତ୍ରିମ କେଶଗୁଚ୍ଛ ସେଥିରେ ଯୋଗ କରାଯାଇ ଦକ୍ଷିଣୀ ବେଣୀସବୁ ସେଥିରେ ଖଞ୍ଜା ହେଲା । ବିଚାରୀ ଛୁଆମାଇଁ କରୁଣ ସ୍ୱରରେ କହୁଥାନ୍ତି– ମୁଁ ହାତ ଟେକି ପାରୁ ନାହିଁ, ଛିଡ଼ା ହୋଇ ପାରୁ ନାହିଁ । ଏତେ ଓଜନ ଟେକି, ପାରିବି ନାହିଁ । ତାଙ୍କ କଥା ଶୁଣୁଛି କିଏ ?

ଅବଶ୍ୟ କୌଣସି ଉତ୍ସବ ବା ବିଭାଘର, ପୁଅ ଏକୋଇଶିଆ ଉପଲକ୍ଷେ ଏ ଗହଣାଗୁଡାକ ପିନ୍ଧିବାରେ ମୁଁ ଅଭ୍ୟସ୍ତ ଥିଲି । ମାଇଁମାନେ ମୋତେ କେଶବିନ୍ୟାସ, ଗହଣା, ଲୁଗାରେ ମୋତେ ସଜେଇବାକୁ ସୁଖ ପାଉଥିଲେ । କିନ୍ତୁ ସେମାନେ ବୋଧହୁଏ ବୁଝିଥିଲେ ଯେ ମୋ ଚେହେରା ସେଥିପାଇଁ ଗଢ଼ା ହୋଇନଥିଲା । ୧୯୩୦ରେ ବୋଉ ଜେଲ୍‌ରେ ଥିବାବେଳେ ମୋ ମା କାର୍ତ୍ତିକମାସ ହବିଷ୍ୟ କରିବା ପାଇଁ ପୁରୀ ଯାଇଥିବାରୁ ମୁଁ କିଛିଦିନ ମାମୁଘରେ ଥିଲି । କୁଆଁର ପୂନେଇ ଦିନ କଟକମାଇଁ ମୋତେ ତାଙ୍କ ସୁନା ମୁକୁଟ ଓଗେର ପିନ୍ଧାଇଦେଇ ସଜାଇ ଦେଲେ । ମୁଁ କାନ୍ଦି ପକାଇଲି । ବେଙ୍ଗମାମୁ ମୋ କାନ୍ଦ ଦେଖି ପକାଇ କହିଲେ, ତା ମୁଣ୍ଡରୁ ଏ ମୁକୁଟଫୁକୁଟ କାଢ଼ି ପକା । ତାକୁ ବାଧୁଛି । ସେହିଦିନୁ ମୁଁ ସେ ସାଜସଜାରୁ ଅବ୍ୟାହତି ପାଇଲି ।

କଟକରେ ଦଶରା ଗୋଟାଏ ବଡ଼ ପର୍ବ । ମାମୁଘର ମୋଟରଗାଡ଼ିରେ ବସି କଟକର ଦେବୀଯାକ ଦେଖିବା ଓ ଶ୍ରୀ ବ୍ରଜସୁନ୍ଦର ଦାସଙ୍କ ମୋଟର କାରରେ ବସି ଦେବୀ ଭସାଣି ଦେଖିବାଟା ଆମ ପାଇଁ ଧରାବନ୍ଧା ହୋଇଯାଇଥିଲା । ତା ସାଙ୍ଗକୁ ଆଉ ଗୋଟାଏ କାର୍ଯ୍ୟକ୍ରମ ଥିଲା ଦଶରା ପର୍ବର ଚାରିଦିନ ଭିତରେ ଦିନେ କେହି ଜଣେ ମାମୁ, ବିଶେଷକରି ନଗି ମାମୁଁ ଆମକୁ ବିଲିମୋରିଆ ବା କୋହିନୂର ଷ୍ଟୋରକୁ ନେଇ ଯାଉଥିଲେ । କଟକରେ ବିଲିମୋରିଆ ଥିଲା ସେତେବେଳେ ଅଭିଜାତ ଶ୍ରେଣୀର । ସେଠାକୁ ଯାଇ ଆମେ ଯାହା ପସନ୍ଦ କରୁଥିଲୁ ତାହା ମିଳୁଥିଲା । ସେଦିନ ସେମାନଙ୍କର ମିଲ୍କ ଅଫ୍ କ୍ୟାରାମେଲ ବା ଟଙ୍କିଡ଼ି ଲକ୍ସ ଭଣ୍ଡାର ଖାଲି ହୋଇ ଯାଉଥିଲା । ଏବେ ଉପଲବ୍ଧି କରୁଛି– ମାମୁଁମାନେ ଆମକୁ କେତେ ପ୍ରଶ୍ରୟ ଦେଉଥିଲେ ।

କ୍ରମେ ମାମୁଘରେ ଭାଇ ଭଉଣୀମାନଙ୍କର ଆବିର୍ଭାବ ହେଲା । ମହାଦେବଙ୍କ ପରି ଢୁଲୁଢୁଲୁ ଆଖି, ତୁଷାରବର୍ଣ୍ଣ ଦେହ, ମଥାରେ ବୋଝେ କୁଞ୍ଚୁକୁଞ୍ଚୁଆ ଚୂଳ– ଗୋପ ଶୈଶବରେ ଅତି ସୁନ୍ଦର ହୋଇଥିଲା । ମାମୁ ଘରେ ତାକୁ ନେଇ ଖେଳିବା ଥିଲା ମୋର ଧନ୍ଦା । ମୁଁ ତାକୁ ଡାକୁଥିଲି ଚୁଙ୍ଗୁଡ଼ି ।

ତା'ପରେ ଆସିଲା ଯୁଗଳ । ମୁଁ ତାକୁ ଡାକିଲି ଉମା । ଉମା ବଡ଼ମା (ଆଈ)ଙ୍କ ତତ୍ତ୍ୱାବଧାନରେ ରହିବା ହେତୁ ଆମେ ତା ସାଙ୍ଗରେ ବହୁତ ଘଷି ହେଲୁ । ଉମା ରାତିରେ ମଧ ବଡ଼ମା'ଙ୍କ ପାଖରେ ଅର୍ଥାତ୍ ଆମ ସାଂଗରେ ଶୁଏ । ବଡ଼ମା'ଙ୍କର ଗୋଟାଏ ବିରାଟ ମଶାରି ଥାଏ । ମୋ

ମାଉସୀଙ୍କ ମୃତ୍ୟୁ ପରେ ମାଉସୀଙ୍କର ପିଲାମାନେ ବଡ଼ମା'ଙ୍କ ପାଖରେ ରହୁଥିଲେ । ମଙ୍ଗୁମାମୁ, ମଟୁମାମୁ ସମେତ ଆମେ ସମସ୍ତେ ସେଇ ମଶାରି ଭିତରେ ଶୋଉଥିଲୁ । ଘରର ସମସ୍ତେ ଖାଇସାରିବା ପରେ ବଡ଼ମା' ଶୋଇବାକୁ ଆସନ୍ତି । ମାଉସୀଙ୍କ ମୃତ୍ୟୁପରେ ସେ ରାତିରେ ଖାଇବା ଛାଡ଼ି ଦେଇଥିଲେ । ମୁଁ ଯେଉଁଦିନ ମାମୁ ଘରେ ଥାଏ, ବଡ଼ମା ଶୋଇବାକୁ ଆସିବାଯାଏ ଚାହିଁ ରହିଥାଏ । ସେ ଆସିବା ମାତ୍ରେ ତାଙ୍କଠୁ ଗପ ଶୁଣିବାକୁ ଅଝଟ ହୁଏ । ବିରକ୍ତି କାହାକୁ କୁହାଯାଏ ବଡ଼ମା' ତାହା  ଜାଣି ନଥିଲେ । ସେ ଗପ କହନ୍ତି– ବେଶୀ ମୋଜାଫରପୁର ଗପ । ଦିନେ ମୁଁ ତାଙ୍କୁ ପଚାରିଲି– ତମେ ମୋଜାଫରପୁର ଗପ କାହିଁକି ଏତେ କୁହ ? ସେ କହିଥିଲେ– ମୁଁ ସେଇଠି ସବୁଠାରୁ ବେଶୀ ଶାନ୍ତିରେ ଥିଲି । ଏତେ କାମ ଭିତରେ ଥାଇ ସୁଦ୍ଧା ବଡ଼ମା ବେଳେବେଳେ ଉଦାସୀନ ହୋଇଯାଆନ୍ତି । ସେତେବେଳେ ସେ ମଙ୍ଗୁମାମୁଙ୍କୁ କହନ୍ତି, 'ଆଜି ତ ଅସାର ଲାଗେ ଏ ସଂସାର' (ମୋହନ ଗୋସେଇଁଙ୍କ ଦ୍ୱାରା ରଚିତ) ଗୀତଟା ବୋଲିଲୁ ।

ବଡ଼ମା' ଚିଙ୍ଗୁଡ଼ି, ଉମାଠାରୁ ଆରମ୍ଭ କରି ଘରର ଚାକର ପୂଜାରୀ ଏପରିକି ଗୃହ ଚିକିତ୍ସକଙ୍କର ସୁଦ୍ଧା ସେ ଥିଲେ 'ଦେଈ ଅପା' । ଡାକ୍ତର ଘର ଭିତରେ ପଶିବା ମାତ୍ରେ ପଚାରନ୍ତି– "ଦେଈ ଅପା କାହାନ୍ତି ?"

କ୍ରମେ ବିଜି, ମିନି, ନିନି, ଟୁନି ପ୍ରଭୃତିଙ୍କର ଆବିର୍ଭାବ ହେଲା । ମାଳ ଅପାଙ୍କପୁଅ କେଶୀ ତାକୁ ମୁଁ ଡାକେ ଭୁଲିଆ । ସୁନି, କୁନ ଅପାଙ୍କ ପୁଅ ଶ୍ୟାମ ପ୍ରଭୃତି ଆମର ଦଳବର୍ଦ୍ଧନ କଲେ । ବିଜିକୁ ବୋଉମଝିଆଁ ମାଇଁ ଅତି ସନ୍ତର୍ପଣରେ ପାଳୁଥିଲେ । 'ସେଇ ଭୟେ ଭୟେ ମରି ବୁଝିବା ହାରାଇ' ଶଙ୍କିତ ଚିତ୍ତ । ତଥାପି ବିଜି ତାଙ୍କ ନଜରରୁ ବେଳେ ବେଳେ ଖସି ଆସେ । ମାମୁ ଘରେ ଯେତେ ପିଲା, ସେତେ ପରିଚାରିକା । ଅଧିକନ୍ତୁ ସର୍ବସାଧାରଣ କାମ କରିବାକୁ କେତେକ ବୟସ୍କା ମହିଳା ଥାଆନ୍ତି । ସେମାନଙ୍କର ଭୃତ୍ୟନିବାସ ପରି ଗୋଟାଏ ଘର ଥାଏ । ସମସ୍ତଙ୍କର ଗୋଟାଏ ଲେଖା ବିରାଟ ବେତ ପେଟେରା । ଗହଣା ପତ୍ର ମଧ୍ୟ କିଛି କିଛି ଦେହରେ ଥାଏ । ସମସ୍ତଙ୍କୁ ନିର୍ଦ୍ଦିଷ୍ଟ କାମ ବଣ୍ଟା ହୋଇଥାଏ ।

ବ୍ରହ୍ମା ମା' ସଞ୍ଜ ଦିଏ । ଅନେକଗୁଡ଼ାଏ ଘର, ଗୁହାଳ, ଧାନ ମରେଇ, ଚଉରାରେ ସଞ୍ଜ ଦେବାକୁ ସେ ପୁଳାଏ ସଞ୍ଜ ବଳିତା ଧରି ବୁଲନ୍ତି । ବିଜିର କାମ ହେଲା ବ୍ରହ୍ମା ମା' ସଞ୍ଜ ଦେବାପରେ ସେ ସଞ୍ଜକୁ ଲିଭେଇବା । ଦିନେ ନିନି ବିଜି ସାଙ୍ଗରେ ମିଶି ସଞ୍ଜ ଲିଭେଇବା କାର୍ଯ୍ୟକ୍ରମରେ ଯୋଗ ଦେଲା । ଅନଭ୍ୟସ୍ତ ଥିବାରୁ ଅସାବଧାନତା ବଶତଃ ତା ଜଂଘିଆରେ ନିଆଁ ଲାଗିଗଲା । ନିନି ଖଦଡ଼ ଜଂଘିଆ ପିନ୍ଧିଥିଲା । ସେ ଯୁଗର ମୋଟା ଖଦଡ଼ । ତାର ପିଚା ପୋଡ଼ିଗଲା । ସେତେବେଳକୁ ପେନିସିଲିନ୍ ଆବିଷ୍କୃତ ହୋଇନଥିଲା । ପୋଡା ଘା' ଶୁଖୁ ନଥାଏ । ବୋଉ ପୋକଶୁଂଘା ପତ୍ର, ମରା ନଡିଆ ତେଲ  ଓ କଳି ଚୂନରେ ଔଷଧ ତିଆରି କରିଦେଲା । ସେହି ଔଷଧରେ ନିନିର ପୋଡ଼ା ଘା' ଶୁଖିଗଲା । ବିଜିର ସଞ୍ଜ ଲିଭାଇବା କାର୍ଯ୍ୟକ୍ରମ ମଧ୍ୟ ଆଉ ଚଳିଲା ନାହିଁ । କ୍ରମେ ନିନି, ଦେବୁ କଣ୍ଟାପାରିରୁ ଆମଦାନି ହେଲେ । ଏ ସମସ୍ତଙ୍କର ମୁଖିଆ ଥିଲେ–

ମୋ ମାଉସୀପୁଅଭାଇ ଶୁକଭାଇ ଓରଫ ଶାରଦାଚରଣ । ମଉସା ଦ୍ୱିତୀୟ ଦାର ପରିଗ୍ରହ କଲେ ଯେ, ଟୁଆଁ, ପୁଟି, ଚିତ୍ତ ତେନ୍ତୁଳିପଦା ଗଲେ । ଆମେ ସ୍ୱାଧୀନତା ଆନ୍ଦୋଳନରେ ମାତିଲୁ । ପରବର୍ତ୍ତୀ କାଳରେ ଭାଇ ଭଉଣୀଙ୍କ ସାଙ୍ଗେ ଯୋଗାଯୋଗ କମିଗଲା ।

ମାମୁଘରକୁ ଆସନ୍ତି ନଦିଆ ନବଦ୍ୱୀପରୁ ରାଇଦାସ ବାବାଜୀ । ତାଙ୍କର ଶିଷ୍ୟମାନେ ତାଙ୍କ ଗହଣରେ ଆସନ୍ତି । ମାମୁଘରେ ଅଷ୍ଟପ୍ରହରୀ, ଚବିଶ ପ୍ରହରୀ ହୁଏ । ଘରର ବୟୋଜ୍ୟେଷ୍ଠମାନେ ତାଙ୍କ ଠାରୁ ମନ୍ତ୍ର ନେଇଥିଲେ । ସହରର ବହୁ ଭକ୍ତଙ୍କ ସମାଗମ ହୁଏ । ଖୁବ୍ ଖିଅଣ ପିଅଣ ହୁଏ । ବାବାଜୀ ମହାଶୟ ଚିନି ଖାଆନ୍ତି ନାହିଁ ବୋଲି କଲିକତାରୁ 'ନତୁନ୍ ଗୁଡ଼େର୍ ସନ୍ଦେଶ' ଆସେ । ବଡ଼ମା' କହୁଥିଲେ, ବାବାଜୀ ମହାଶୟ ଖାସ୍ ଦେଶର ସ୍ୱାଧୀନତା ପାଇଁ ଏକ ଲକ୍ଷ ମହାମନ୍ତ୍ର ଜପ କରୁଥିଲେ ।

ପୁଣି କଟକକୁ ବଡ଼ବଡ଼ ସଙ୍ଗୀତଜ୍ଞ, ଓସ୍ତାଦ୍ ଆସିଲେ ମାମୁଘରକୁ ସେମାନଙ୍କ ସମାଗମ ହୁଏ । ସଙ୍ଗୀତପ୍ରେମୀ ସହରବାସୀ ଆମନ୍ତ୍ରିତ ହୋଇ ଆସନ୍ତି । ଆମର କାମ ହେଲା ଏସବୁ ଦେଖି ହୋହଲ୍ଲା କରିବା ।

ଏସବୁ ସମାରୋହ ଓ ବିଭାଘର ଗଣ୍ଡଗୋଳ ବେଳେ କୁନଅପା ଆମ ଖବର ବୁଝିବା ଦାୟିତ୍ୱ ବହନ କରନ୍ତି । ସେ ତ ପର୍ଦ୍ଦାନସୀନ । ଆମେ ତ ଦାଣ୍ଡୁଆ ପ୍ରାଣୀ । କେତେବେଳେ ଶିବ ମନ୍ଦିରରେ ତ କେତେବେଳେ ପୋଖରୀକୂଳରେ, କେତେବେଳେ ଖନ୍ଦାଶାଳରେ । କୁନଅପାଙ୍କ ଅଧୀନରେ ଜଣେ ଦି'ଜଣ ଚାକର ଥାଆନ୍ତି । ସେମାନେ ଆମକୁ ଖୋଜି ଜଣଜଣ କରି କୁନଅପାଙ୍କ ପାଖରେ ପହଞ୍ଚାନ୍ତି । ସେ ଆମକୁ ନାନାପ୍ରକାର ସୁସ୍ୱାଦୁ ଖାଦ୍ୟର ତାଲିକା ଶୁଣାଇ ଖାଇବାକୁ ପ୍ରବର୍ତ୍ତାନ୍ତି । ଆମେ ତାଙ୍କୁ ବହୁତ ହଇରାଣ କରୁ । ସତେ ଯେପରି ତାଙ୍କର ସାତପୁରୁଷ ଉଦ୍ଧାର କରୁଛୁ । ଏଣେ କୁନ ଅପାଙ୍କୁ ମଧ୍ୟ ଜଣା ନଥାଏ ଯେ ଆମେ ଖନ୍ଦାଶାଳକୁ ଯାଇ ପାମ୍ପଡ଼ ଭଜା ବା ସେହିପରି ମୁଖରୋଚକ ଖାଦ୍ୟ ଚରୁଛୁ ।

ବଡ଼ମା' କହୁଥିଲେ– ତାଙ୍କ ବାପାଙ୍କ ଅମଳରେ ବନାରସ୍‌ରୁ ବାଇଜୀମାନେ ମାମୁଘରକୁ ଆସୁଥିଲେ । କିନ୍ତୁ ପର୍ଦ୍ଦା ପ୍ରଥା ଯୋଗୁଁ ସେମାନେ ବାଇଜୀଙ୍କ ନାଚଗୀତ ପିଲାଦିନେ ସୁଦ୍ଧା ଦେଖି ନାହାନ୍ତି । କେବଳ କଣ୍ଠସ୍ୱର ଅନ୍ଦର ମହଲକୁ ଭାସି ଆସେ । ବଡ଼ ଜେଜେ ପୁରୀରେ ଥିଲାବେଳେ ତାଙ୍କ ଘରେ ମାହାରୀମାନେ ଆସି ନାଚନ୍ତି ବୋଲି ବାଳକୃଷ୍ଣ ଅଜା (ପଟ୍ଟନାୟକ)ଙ୍କ ଠାରୁ ବର୍ଣ୍ଣନା ଶୁଣିଛି ।

ସଙ୍ଗୀତଜ୍ଞମାନଙ୍କ 'ଜଲ୍‌ସା'ରେ ଆମେ କିଛି ସମୟ ଯୋଗ ଦେବାର ସୁଯୋଗ ପାଉ । ଥରେ ପ୍ରଖ୍ୟାତ ବୀଣାବାଦକ ପ୍ରଜାବନ୍ଧୁ ଅପନ୍ନା ପାଣିଗ୍ରାହୀ ମାମୁଘରେ କିଛି ଦିନ ରହିଥିଲେ । ମୁଁ ଓ ମଙ୍ଗଳା ସେନଗୁପ୍ତ ମାମୁଘରକୁ ଯାଇଥିଲୁ । ପାଣିଗ୍ରାହୀ ଆପଣେ ଗେରୁଆ ଲୁଗା ପିନ୍ଧି ବୈଠକଖାନାରେ ବସିଥିଲେ । ନଗି ମାମୁଁ ଆମକୁ ତାଙ୍କ ପାଖକୁ ନେଇ ଯାଇ ତାଙ୍କୁ ବୀଣା ବଜାଇବାକୁ ଅନୁରୋଧ କଲେ । ସେ ବୀଣାର ଝଙ୍କାର ସହିତ ସ୍ୱର ମିଳାଇ ଗାଇଲେ– 'ବସନ୍ତ କାଳେ ସଖୀ ଅନ୍ତର ହୋଲୁ କି ?' ପ୍ରଦୋଷ ସମୟ । ବଗିଚାରୁ ମାଳତୀଫୁଲର ସୁଗନ୍ଧ ଭାସି

ଆସୁଥାଏ । ଚାରିଆଡ଼ ନିସ୍ତବ୍ଧ । ସେଦିନର ସେ ଅନିର୍ବଚନୀୟ ଅନୁଭୂତି ଏବେ ସୁଦ୍ଧା ଜୀବନ୍ତ ହୋଇ ରହିଛି ।

ମାମୁଘରର ପଢ଼ାଘରେ ଧାଡ଼ି ଧାଡ଼ି ବହି ଆଲମାରୀ ଥୁଆ ହୋଇଥାଏ । ସେଥିରେ ଅକ୍ଷରଖଞ୍ଜା ତାଲା ପଡିଥାଏ । ଗୋଟାଏ ତାଲାରେ ଚାରିଧାଡ଼ିରେ ବିଭିନ୍ନ ଇଂରାଜୀ ଅକ୍ଷର ଲେଖା ହୋଇଥାଏ । ଅକ୍ଷରଗୁଡାକ ହାତରେ ବୁଲାଇଲେ ବୁଲେ । ଗୋଟିଏ ନିର୍ଦ୍ଦିଷ୍ଟ ଶବ୍ଦର ଅକ୍ଷର ଖଞ୍ଜି ହୋଇଗଲେ ତାଲା ଫିଟିଯାଏ ।

ଭାଇ ମାମୁଘରକୁ ଗଲେ ଏହି ତାଲା ଫିଟାଇ ଆଲମାରୀରୁ ବହି ବାହାର କରି ପଢ଼ନ୍ତି । ୧୯୨୧ରେ ବାଖରାବାଦ ଛକରେ ମୋ ଦାଦା ଓ ମାମୁମାନେ ମିଶି ଯେଉଁ 'ଭାରତୀ ମନ୍ଦିର' କରିଥିଲେ ଏ ବହି ସେଇଠି ଥିଲା । ବାପା କଲିକତା ବିଶ୍ୱବିଦ୍ୟାଳୟରେ ଓକିଲାତି ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଏକ ହଜାର ଟଙ୍କା ପାରିତୋଷିକ ପାଇଥିଲେ । ସେହି ଟଙ୍କାରେ ସେ ଏନ୍‌ସାଇକ୍ଲୋପେଡ଼ିଆ ବ୍ରିଟାନିକା, ସାଏନ୍ସ ଅଫ୍ ଲାଇଫ ଠାରୁ ଆରମ୍ଭ କରି ଡିକେନ୍ସ, ସେକ୍ସପିଅରଙ୍କ ଗ୍ରନ୍ଥାବଳୀ କିଣିଥିଲେ । ସେସବୁ ବହି ମଧ୍ୟ 'ଭାରତୀ ମନ୍ଦିର'ରେ ଥିଲା । 'ଭାରତୀ ମନ୍ଦିର' ଭାଙ୍ଗିଯିବା ପରେ ସେ ସବୁ ବହି ମାମୁ ଘରେ ରହିଥିଲା । ଭାଇ ସେହି ବହି ସବୁ ବାହାର କରି ପଢ଼ନ୍ତି । ଆମ ସାଙ୍ଗରେ ହୋହଲ୍ଲା କରନ୍ତି ନାହିଁ ।

ଆମ ମାମୁ ଅଧ୍ୟୟନଶୀଳ ଥିବା ହେତୁ ସତ୍ୟଭାମାପୁରରେ ତାଙ୍କ ପୁସ୍ତକାଗାରରେ ବିଶ୍ୱ ସାହିତ୍ୟ ସାଙ୍ଗକୁ ପ୍ରାଚୀନ ଓଡ଼ିଆ ସାହିତ୍ୟ, ଉପନିଷଦ୍, ଷଡ୍‌ଦର୍ଶନ ଆଦି ମଧ୍ୟ ଥାଏ । ମାଇଁମାନେ ବଙ୍ଗଳା ଉପନ୍ୟାସ, ଡିଟେକ୍ଟିଭ ଉପନ୍ୟାସପ୍ରିୟ ଥିଲେ । ଆମେ ମଧ୍ୟ ବଙ୍ଗଳା ଉପନ୍ୟାସ ପଢୁଥାଉ । ଭଞ୍ଜ ସାହିତ୍ୟ ପଢ଼ିବା ଆମ ପାଇଁ ପୂରାପୂରି ନିଷିଦ୍ଧ ଥିଲା ।

ବଡ଼ମା' ଓ ତାଙ୍କ ଭଉଣୀ ପୁରୀମା' ଓରଫ ହେମନ୍ତ କୁମାରୀ ଦେବୀ ଏ ବାବଦରେ ବହୁତ ଆଗୁଆ ଥିଲେ । ଶୋଇବା ପୂର୍ବରୁ ନିୟମିତ କୌଣସି ସଦ୍‌ଗ୍ରନ୍ଥ, ବିଶେଷରେ 'ଚୈତନ୍ୟ ଚରିତାମୃତ' ପଢ଼ିବା ଗୋଟାଏ ନିୟମରେ ପରିଣତ ହୋଇଥିଲା । ବଡ଼ମା' ଅପରପ୍ରାଇମେରୀ ପରୀକ୍ଷାରେ ପ୍ରଥମ ହୋଇଥିଲେ । ସେତେବେଳକୁ ଓଡ଼ିଆ ପାଠ ଉପରେ ତାଙ୍କର ଦଖଲ ଆସିଯାଇଥିଲା ବୋଲି ସେ ଭର୍ଣ୍ଣାକୁଲାର ପଢ଼ିଲାବେଳେ ବଙ୍ଗଳା ପଢ଼ିଲେ । ୧୯୧୪-୧୫ ବେଳକୁ 'ପରିଚାରିକା' ନାମରେ ଗୋଟିଏ ମାସିକ ପତ୍ରିକା ବଡ଼ମା'ଙ୍କ ସମ୍ପାଦକତ୍ୱରେ ପ୍ରକାଶ ପାଇଲା । କେବଳ ଫକୀରମୋହନ ସେନାପତିଙ୍କୁ ଛାଡ଼ିଦେଲେ ଗହକିମାନେ ହିଁ ସେ ପତ୍ରିକାର ଲେଖିକା ଥିଲେ । 'ଗିରିଧାରୀ' ନାମରେ ବଡ଼ମା'ଙ୍କର ଗୋଟିଏ ଧାରାବାହିକ ଉପନ୍ୟାସ ସେ ପତ୍ରିକାରେ ବାହାରୁଥିଲା । ବୋଉ, ସରଳାଦେବୀ, ପୁରୀମା', ସରୋଜିନୀ ଚୌଧୁରୀ, କୋକିଳ ଦେବୀ ପ୍ରଭୃତିଙ୍କ ଲେଖା ବାହାରୁଥିଲା । ସେ ପତ୍ରିକା ଦୁଇବର୍ଷ ପରେ ବନ୍ଦ ହୋଇଗଲା । ଆମ ପିଲାଦିନେ ମୁଁ ସେ ପତ୍ରିକା ପଢ଼ିଛି । ଆମେ ସମସ୍ତେ ଜେଲରେ ରହିବା ଫଳରେ ସେସବୁ ପତ୍ରିକା ଓ ବହି ଆଉ

ମିଳିଲା ନାହିଁ । ବର୍ତ୍ତମାନ ସରଳା ଦେବୀଙ୍କ ନାତୁଣୀ ନିବେଦିତା ଏହି ପତ୍ରିକାରୁ କେତୋଟି ସାଇତି ରଖିଛି ।

ବୋଉର ବାପଘର ସତ୍ୟଭାମାପୁରରେ । ସେଠି ଆମ ମାମୁ, ଉପମାମୁ, ଆମ ମାଈଁ ଉର୍ମିଳା ଦେଇ । ମାଈଁ ପୁରୀମା'ଙ୍କ ଦେଢ଼ଶ୍ୱଶୁର ବାସୁଦେବ କାନୁନଗୋଙ୍କ ଝିଅ । ଆମ ମାଈଁଙ୍କୁ ରାଧାକୃଷ୍ଣ କାନୁନ୍‌ଗୋ ଝିଅ କରି ନେଇଥିଲେ । ମାଈଁ ଶୈଶବରେ ମାମୁ ଘରକୁ ବୁଲି ଆସନ୍ତି । ତାଙ୍କୁ ପଚରାଯାଏ– ତୋ ନାଆଁ କଣ ? ସେ ଏକା ନିଃଶ୍ୱାସରେ କହନ୍ତି– ଉର୍ମିଳା ଦେଈ, ବାପା-ରାଧାକୃଷ୍ଣ କାନୁନ୍‌ଗୋ, ଘର-ହାବେଇଗଇ । ଶିଶୁର ଦରୋଟି ଏ ଅମୃତ ବଚନକୁ ବୋଉ ମନେ ରଖି ଆମକୁ କହିଥିଲା ! ସେହିପରି କଟକ ମାଈଁ– ମୁଁ ତାଙ୍କୁ ସାନବୋଉ ଡାକୁଥିଲେ ମଧ ପିଲାଦିନେ ବାଙ୍କାବଜାର ମାମୁଘରକୁ ବୁଲି ଆସୁଥିଲେ । ଦିନେ ତାଙ୍କ ଜନ୍ମଦିନରେ ଚନ୍ଦନପାଟି ଲଗେଇ, ନୂଆ ଲୁଗା ପିନ୍ଧି ସେ ତାଙ୍କ ଧାତ୍ରୀ ସାଙ୍ଗରେ ବୁଲି ଆସିଲେ । ବୋଉ ପଚାରିଲା– ଆଜି ଜନ୍ମଦିନରେ କ'ଣ ଖାଇଲୁ ? ସାନବୋଉ କହିଲେ– ମିଠେଇ । ବୋଉ କହିଲା– ପିଠା ଖାଇନାହୁଁ ? ଜବାବ ମିଳିଲା– ସେଇ ମିଠେଇ ସେଇ ପିଠା । ବୋଉ ସେ କଥାଟାକୁ ମଧ ସାଇତି ରଖିଥିଲା ।

ଏବେ ପୁରୀରେ ଯେଉଁ ସଡ଼କଟା ଗୋପାଳବଲ୍ଲଭ ରୋଡ୍ ନାମରେ ନାମିତ ହୋଇଛି ସେହି ସଡ଼କରେ ଗୋପାଳବଲ୍ଲଭ ଦାସଙ୍କ ଘର ଥିଲା । ଶ୍ରୀ ଉମାଚରଣ ଦାସ ପରେ ସେ ଘରକୁ କିଣି ନେଲେ । ପୁରୀ ମା' କହୁଥିଲେ, ଅଜାଙ୍କର ପେଟ ଭିତରେ ଗୋଟାଏ ଘା ହେଲା । ସେ ଯୁଗରେ (୧୯୧୪) ଏହାର ଚିକିତ୍ସା ଆବିଷ୍କୃତ ହୋଇନଥିଲା । ମୃତ୍ୟୁ ନିଶ୍ଚିତ ଜାଣି ସେ ମୃତ୍ୟୁ ଶଯ୍ୟାରେ ଉପମାମୁଙ୍କୁ ପୁଅ କଲେ । ଉପମାମୁ ମଧ ଏହା ଜାଣି ନଥିଲେ । ତାଙ୍କର ମୃତ୍ୟୁ ପରେ ବନ୍ଧ ବାସେଳୀରୁ ଲୋକ ଆସି ବାଙ୍କା ବଜାରରେ କହିଲେ ଯେ ଉପବାବୁ ମୁଖାଗ୍ନି ଦେବାକୁ ଯିବେ । ଏ କଥା ଶୁଣି ମାମୁବୋଉ କାନ୍ଦିଲେ । ଉପମାମୁ ଦାନ୍ତ ଘଷୁଥିଲେ । ସେ ଯାଇ ମୁଖାଗ୍ନି ଦେଲେ । ମାତ୍ର ଏପରି ଭାବରେ ପୁଅହୋଇ ଯିବାଟାକୁ ତାଙ୍କ ମନ ଗ୍ରହଣ କଲା ନାହିଁ । ଅନେକ ପୋଷ୍ୟପୁତ୍ରଙ୍କୁ ମୁଁ ପଚାରି ବୁଝିଛି– ବାପମା'ଙ୍କ ଠାରୁ ଦୂରେଇ ଯିବାର ଏହି ପୋଷ୍ୟପୁତ୍ର ପ୍ରକ୍ରିୟାଟା ସେମାନଙ୍କ ମନ ଉପରେ ଗୋଟାଏ ସ୍ଥାୟୀ ପ୍ରଭାବ ପକାଏ, ଯେଉଁଟା ସ୍ପୃହଣୀୟ ନୁହେଁ ।

ଏଣେ ଅଜାଙ୍କ ବଡ଼ଭାଇ ମଧୁସୂଦନ (କୁଳବୃଦ୍ଧ) ମଧ ଏ ପୋଷ୍ୟପୁତ୍ର ହେବା କଥା ଶୁଣି କ୍ଷୁବ୍ଧ ହୋଇ କହିଲେ– "ଗୋପାଳ କାହିଁକି ତାକୁ ପୋଷ୍ୟପୁତ୍ର କଲା ? ତା' ଦେହରେ କଣ ସତୀ ରକ୍ତ ଅଛି ?" ମଧୁସୂଦନଙ୍କ ପ୍ରପିତାମହୀ ସ୍ୱେଚ୍ଛାରେ ସତୀ ହୋଇଥିଲେ ବୋଲି ମଧୁସୂଦନଙ୍କ ମନରେ ଗୋଟାଏ ଅହଂକାର ଥିବାର ସୂଚନା ତାଙ୍କ ଅସମ୍ପୂର୍ଣ୍ଣ ଆତ୍ମକଥାରୁ ମିଳିଥାଏ ।

ଉପମାମୁ ମଧ ବୋଧହୁଏ ମଧୁସୂଦନଙ୍କର ଏ ଉକ୍ତି ଶୁଣିଥିବେ ଏବଂ ଆଘାତ ପାଇଥିବେ । ସେଥିପାଇଁ ବଡ଼ଜେଜେ ଓ ମଧୁସୂଦନଙ୍କ ବାବଦରେ ତାଙ୍କ ମନରେ ଗୋଟାଏ ଗ୍ରନ୍ଥି ରହିଗଲା

ବୋଲି ମନେହୁଏ । ଯାହାହେଉ, ଭଣଜା ଭାଣିଜୀ ହିସାବରେ ଆମେ ମାମୁ ମାଇଁଙ୍କ ଠାରୁ ଯେଉଁ ସ୍ନେହ ଆଦର ପାଇଛୁ ତାହା ସଂସାରରେ ବିରଳ ।

ମଧୁସୂଦନଙ୍କର ନନ୍ଦକିଶୋର ଦାସଙ୍କ ସହିତ ବୈବାହିକ ସମ୍ପର୍କ ପୂର୍ବରୁ ଘନିଷ୍ଠ ସମ୍ପର୍କ ଥିଲା । ଅନେକେ କହନ୍ତି ନନ୍ଦକିଶୋର ହିଁ ମଧୁସୂଦନଙ୍କୁ କଲିକତାରୁ ଓଡ଼ିଶା ଫେରାଇ ଆଣିଥିଲେ । ନନ୍ଦକିଶୋରଙ୍କ ବଡ଼ଝିଅ ନିଶାମଣି (ଗୋପାଳ ବଲ୍ଲଭଙ୍କ ପ୍ରଥମା ପତ୍ନୀ)ଙ୍କର ଗୋଟିଏ ତୈଳଚିତ୍ର ମଧୁବାବୁଙ୍କ କଟକ କୋଠିରେ ଟଙ୍ଗା ହୋଇଥଲା । ମୋ' ମା' ମୋତେ ଚିହ୍ନାଇ ଦେଇଥିଲା– ଏଇ ମୋ 'ଚାନ୍ଦ' । ମା' ତାଙ୍କ ସଙ୍ଗେ ଚାନ୍ଦ ବସିଥିଲା ଏବଂ ସେ ଦେଢ଼ଶ୍ୱଶୁରକୁ ଆଢ଼ ହେଉନଥିଲା ବୋଲି ତାଙ୍କର ପରଜନ୍ମରେ ପେଚା ହେବାଟା ନିଶ୍ଚିତ ବୋଲି ଲୋକଶାସ୍ତ୍ର କହୁଥିବାରୁ ପେଚା ଦେଖିଲେ ମା କହୁଥିଲା– ଏ ମୋ ଚାନ୍ଦ । ବଡ଼ମା' ମଧ ଦେଢ଼ଶ୍ୱଶୁରକୁ ଆଢ଼ ହେଉନଥିଲେ । ସେ ନିୟମିତ ତାଙ୍କ କୋଠିକୁ ଯାଇ ବିଭିନ୍ନ ବିଷୟରେ ତାଙ୍କର ପରାମର୍ଶ ଗ୍ରହଣ କରୁଥିଲେ । ବଡ଼ମା' ଯେଉଁଦିନ ପାନଖିଆ ମୁହଁକୁ ଧୋଇ, ବଗପକ୍ଷୀ ପରି ଧଳା ଲୁଗା ଉପରେ ରେଶମୀ ଚାଦର ଘୋଡ଼ି ହୋଇ ଦାଣ୍ଡକୁ ଆସୁଥିଲେ, ଆମେ ତୁରନ୍ତ ବୁଝି ଯାଉଥିଲୁ ସେ କେଉଁଠିକି ଯାଉଛନ୍ତି । ତଥାପି ପଚାରୁଥିଲୁ– ବଡ଼ମା' ! ତମେ କୁଆଡ଼େ ଯାଉଛ କି ? ସେ ସଲଜ୍ଜ ହସ ହସି କହୁଥିଲେ 'କୋଠିକୁ' । 'କୋଠି' ଓ 'ମିଷ୍ଟର ଦାସ' ଏ ଦୁଇଟା ଶବ୍ଦ କଟକରେ ମଧୁବାବୁଙ୍କ ବାସଭବନ ଓ ମଧୁବାବୁଙ୍କୁ ବୁଝାଉଥିଲା । ବଡ଼ ମା' ରାଜାରାଜୁଡ଼ାଙ୍କ ଘରକୁ ଗଲାବେଳେ କେତେଥର ଆମକୁ ସାଙ୍ଗରେ ନେଇଛନ୍ତି, କିନ୍ତୁ କୋଠିକୁ ସାଙ୍ଗରେ ନେବା କଥାଟା ଆମ କଳ୍ପନାର ଅତୀତ ଥିଲା । କେବଳ ଭାଇକୁ ସେ ସୁଯୋଗ ମିଳିଥିଲା । ନିଜେ ମିଷ୍ଟର ଦାସ ଆଗ୍ରହ ପ୍ରକାଶ କରିବାରୁ ଭାଇ ତାଙ୍କ ପାଖକୁ ଗଲେ । ମିଷ୍ଟର ଦାସ ତାଙ୍କ ସଙ୍ଗେ କଥାବାର୍ତ୍ତା କଲେ ଏବଂ ଆମେ ଅଧମମାନେ ବଡ଼ମା'ଙ୍କ ଠାରୁ ଶୁଣିଲୁ ଯେ ସେ କୁଆଡ଼େ କହିଲେ– ପିଲାଟା ମୋ ପାଖକୁ ଆସୁ । ମୋ ସାଙ୍ଗରେ ପୁରୁଣା ଚାଉଳ ଭାତ ଓ ମାଗୁର ମାଛ ଝୋଳ ଖାଇବ । ନିୟମିତ କେତେଦିନ ଯିବା ପରେ ଭାଇଙ୍କର କୋଠିଯାତ୍ରା ବନ୍ଦ ହୋଇଗଲା ।

ଆମ ଜେଜେ ଗୋକୁଳାନନ୍ଦ ଚୌଧୁରୀ ଆମ ବଡ଼ଅଜା ମଧୁସୂଦନ ଦାସଙ୍କର ଜୁନିଅର (ଓକିଲ) ଥିଲେ ଏବଂ କଲେଜରେ ପଢ଼ିବା ବେଳୁ ତାଙ୍କର ସ୍ତାବକ ଥିଲେ । ପରବର୍ତ୍ତୀ କାଳରେ ଦୁହିଁଙ୍କ ମଧରେ ମତାନ୍ତର ହେଲା । ଯେତେବେଳେ ଗୋକୁଳାନନ୍ଦଙ୍କ ପୁଅ ଗୋପବନ୍ଧୁ ସହ ବିବାହ ପ୍ରସ୍ତାବ ପଡ଼ିଲା ସେତେବେଳେ ଅନେକ କୁଆଡ଼େ ଆଶ୍ଚର୍ଯ୍ୟାନ୍ୱିତ ହେଲେ ।

ବୋଉ ମୁହଁରୁ ଶୁଣିଛି– ଅଜା ଓ ବୋଉ ଏକା ଥାଳିରେ ଜଳଖିଆ ଖାଉଥିଲେ । ଦାଣ୍ଡରୁ 'ଗୋପାଳ ଗୋପାଳ' ଡାକ ଶୁଭିଲା । ଅଜା କହିଲେ ଗୋକୁଳାନନ୍ଦ ଆସିଛି । ଅଜା ହାତ ଧୋଇ ବୈଠକ ଖାନାକୁ ଗଲେ । ଜେଜେ କୁଆଡ଼େ ଅଜାଙ୍କୁ କହିଲେ, ତୁ ମତେ ନ ପଚାରି ଝିଅ ବାହାଘର କରୁଛୁ ? ଏ ବିଭାଘର ଭାଙ୍ଗିଦେ । ଅଜା କି ଜବାବ ଦିଅନ୍ତେ ? ବଡ଼ଭାଇ (ବୋଉ ବଡ଼ବାପା) ମିଷ୍ଟର ଦାସଙ୍କୁ ଏ ବିଷୟ ଜଣାଇବାରୁ ସେ କହିଲେ– ଗୋକୁଳାନନ୍ଦ ଓ ମୋ

ଭିତରେ ମତାନ୍ତର ହେଲେ କଣ ହେଲା ? ଗୋପବନ୍ଧୁ ସୁପାତ୍ର । ସେଇଠି ଜବାବ ଦେ । ଏହିପରି ଭାବରେ ଉଭୟ ପରିବାର ମଧ୍ୟରେ ବୈବାହିକ ସଂପର୍କ ସ୍ଥାପିତ ହେଲା । ମାତ୍ର ଏ ବିବାହର ଦୁଇ ମାସ ନ ପୂରୁଣୁ ଅଜାଙ୍କର କାଳ ହୋଇଗଲା ଓ ଏହାର ପରେ ପରେ ଜେଜେଙ୍କର କାଳ ହୋଇଗଲା ।

ସତ୍ୟଭାମାପୁରର ସବୁଠାରୁ ପୁରୁଣା ସ୍ମୃତି ହେଉଛି ମାମୁ ବିଭାଘର । ବୋଉ ସାଙ୍ଗରେ ସୁଆରିରେ ବସି ମୁଁ ସତ୍ୟଭାମାପୁର ଗଲି । ମହାନଦୀ ଗର୍ଭରେ ପାଣିରେ ପଶି ବେହେରାମାନେ ସବାରି ଡାକ ଦେଉଥାନ୍ତି "ହାକୁମ ଧବଲ, ଧାକୁମ୍ ଧବଲ" । ସବାରି ଡାକ ଦେଇ ଗଲେ ସେମାନେ, ନଈ ପାରି ହେଲେ । ସତ୍ୟଭାମାପୁରରେ ଆଗେ କୁନାଭାଇ, ଟୁଆଁ, ପୁଟି, ମନୁମାମୁ, ଭୁଲିଆ ଓ ମୁଁ ଚିନ୍ତା (ନାୟକ) ଜିମ୍ମାରେ ରହିଲୁ । ଆମକୁ ଦାନ୍ତ ଘଷାଇ କନକ-ଦଣ୍ଡା ପୋଖରୀରୁ ଗାଧୋଇ ଆଣିବା ଦାୟିତ୍ୱରେ ଅନ୍ତାମା ରହିଲା । ସକାଳଓଳି ଓ ଉପରଓଳି ଆମକୁ ପଢ଼େଇବାକୁ ବା ଅଢ଼େଇବାକୁ ଶ୍ରୀ ଗୋପୀ ପଣ୍ଡା ନିଯୁକ୍ତ ହେଲେ । ସତ୍ୟଭାମାପୁର ଘରେ ସେ ସମୟରେ ଅନେକ ପରସ୍ତ ଘର ଥିଲା । ଆଦି ନିବାସ ଅର୍ଥାତ୍ ଅଜାଙ୍କ ପୈତୃକ ପକ୍କାଘର ପରେ ଗୋଟିଏ ସାହାଲା ଚାଳଛପର ପକ୍କା ବଙ୍ଗଳା ଘର, ତା'ପରେ ଗୋଟାଏ ଅଗଣା । ଅଗଣା ପରେ ଛଣ ଛପର ପକ୍କା ଘର । ସେଇଟା ନାଆଁ ନିଲାମ ଘର । ରୋଷେଇ ଘରଟା ବଙ୍ଗଳା ଓ ନିଲାମ ଘରକୁ ଯୋଗ କରିଥାଏ । ତା'ପରେ ପୁଣି ଗୋଟାଏ ଅଗଣା ପରେ ସାହାଲାଏ ମାଟିଘର । ତା ନାଆଁ ବିହନଘର । ବିହନ ଘର ଓ ନିଲାମ ଘରକୁ ଠାକୁରଘର ଯୋଡ଼ି ଦେଇଥାଏ । ଖରାବେଳେ ବଙ୍ଗଳା ଘରେ ଆମେ ବନ୍ଦ ରହୁ ବା ଶୋଉ । ଚିନ୍ତା ଆମକୁ ଜଗେ । ଆମର ମନୋରଂଜନ ପାଇଁ ନିଲାମଘର ପିଣ୍ଡାରେ କାଠ କାମ କରୁଥିବା ମିସ୍ତ୍ରୀଙ୍କ ଦ୍ୱାରା ଗୋଟିଏ ଚାରିଚକିଆ କାଠ ଗାଡ଼ି ଆମ ଜଗୁଆଳ ଚିନ୍ତା ନାୟକ କରାଇ ଦେଲେ । ସେ ଗାଡ଼ି ଉପରେ ଗୋଟାଏ ବଡ଼ ଗାଧୋଇବା ଟବ୍ ରଖି ଆମକୁ ସେ ଟବ୍‌ରେ ବସେଇ ଦୁଇଟା ଛେଳି ଧରି ଆଣି, ଯୋଚି ଦେଇ ଚିନ୍ତା ନାୟକ ଗାଡ଼ି ଚାଳକ ହୁଅନ୍ତି । ମାମୁଘର ହତାର ଅଠର ଏକର ଫଳ ବଗିଚା ଭିତରେ ଆମେ ସେଇ ଗାଡ଼ିରେ ବସି ବୁଲୁ । (ଏ ଗାଡିର ଛବିଟା ମାଣିକ ପାଖରେ ଅଛି) ।

ଖରାବେଳେ ବନ୍ଦୀଶାଳାରୁ ମୁକୁଳିବା ପରେ ଜଳଯୋଗ । ତା'ପରେ ଚିନ୍ତା ସାଂଗରେ ବାଲି ପୋଖରୀକୁ ଯାଉ । ବାଲି ପୋଖରୀରେ ଗୋଟାଏ କାଠୁଆ ଡଙ୍ଗା ପଡିଥାଏ । ପୋଖରୀଟା ଅଗଭୀର । ଚିନ୍ତା ଆମକୁ ଡଙ୍ଗାରେ ବସାଇ ଡଙ୍ଗାଟାକୁ ପେଲି ପେଲି ଚଳାଏ । ଆମେ କିଛି ଗୋଳମାଳ କଲେ ପୋଖରୀରୁ ଗୋଟାଏ ଦି'ଟା ମାଛ କି ପଦ୍ମଫୁଲ ଦେଇ ଆମକୁ ବାଆଁରେଇ ଦିଏ ।

ନୌକା ବିହାର ପରେ ଆମକୁ ଗୋପୀ ପଣ୍ଡାଙ୍କ ଜିମାରେ ଛାଡ଼ି ସେ ଟିକିଏ ନିଃଶ୍ୱାସ ମାରୁଥିବ ବା ଆମ ଗୁଣଗ୍ରାମ ବଖାଣୁ ଥିବ ବୋଲି ମୁଁ ଏବେ ଭାବୁଛି । ଗୋପୀ ପଣ୍ଡାଙ୍କ ପାଖରେ

କଣ ପଢୁ, ମୋର ମନେ ନାହିଁ । କାରଣ ପାଠ ପ୍ରତି ଅନୁରାଗ ମୋର ପିଲାଦିନୁ ନାହିଁ । ସେ ଗୀତ ମଧ୍ୟ ବୋଲନ୍ତି । ଗୋଟାଏ ଗୀତ ମନେ ଅଛି–

"ଚିଙ୍ଗୁଡ଼ି ମାଛ ଥାଇ ବୋଇଲା ମୋ ପିଠିରେ କୁଜ
ଆମ୍ବୁଲ ଟାକରା ଦିଖଣ୍ଡ ପକେଇ ମୋ ମଜାଟା ବୁଝ ।
ମନେଇ ଚିଙ୍ଗୁଡ଼ି ଥାଇ ବୋଇଲା ମୁଁ ବାର ବାଗୁଆ ରାଉ
ମୋତେ ଚିଲା ମାରି ନେଇଥାଏ ଶୁହାକପିତା ଭାଉ ।"

କବିତା ଆହୁରି ଶୁଣିବା ସତ୍ତ୍ୱେ ଆମେ ଘୁମେଇବାକୁ ଆରମ୍ଭ କରୁ । ଛୁଟି ମିଳିଯାଏ । ପଣ୍ଡା ଆପଣେ ମଧ୍ୟ ନିଃଶ୍ୱାସ ମାରୁଥିବେ ।

ସକାଳ ଓଳି ପାଠପଢ଼ା ପ୍ରତି ପଣ୍ଡା ଆପଣେ ଅଧିକ ଦୃଷ୍ଟି ଦିଅନ୍ତି । ଆମେ ତାଙ୍କୁ ଠକିବାକୁ ପାଣି ପିଇବାକୁ ବା ଅନ୍ୟ କିଛି ବାହାନା ଦେଖାଇ ଯିବାକୁ ଚାହିଁଲେ ସେ କହନ୍ତି– ଛେପ ପକେଇ ଯାଅ । ଛେପ ଶୁଖିବା ଆଗରୁ ଫେରି ଆସିବାକୁ ହେବ ।

ମାମୁଙ୍କ ବିଭାଘର ପାଖେଇ ଆସିଲା । ଗୋଟାଏ ହାତୀ ଆସି ଦାଣ୍ଡ ରସକୁଣ୍ଡା ପୋଖରୀ କୂଳରେ ବନ୍ଧାହେଲା । ଆମେ ଛେଳିଟଣା ଗାଡ଼ିକୁ ଛାଡ଼ି ହାତୀ ପିଠିରେ ବୁଲିଲୁ । ସବଘରୁ ମନଇଚ୍ଛା ଚାଉଳ ଓ ନଡ଼ିଆ ବୋହି ଆଣି ହାତୀକୁ ଖାଇବାକୁ ଦେଲୁ । ତା' ପରେ ଆସିଲେ ବ୍ୟାଣ୍ଡ ପାର୍ଟି । ଡେଙ୍ଗା ଡେଙ୍ଗା ଗୋରା ସାହେବ । ଶାଗୁଆ ରଙ୍ଗର ମଖମଲ ଲଗା ଶିଶୁକାଠ କି ମେହଗାନି କାଠର ଚଉକୀ ରସକୁଣ୍ଡା ପାଖ ଚଟାଣ ଉପରେ ପଡ଼ିଲା । ମାମୁ ଖାଲି ଦେହରେ ଚାଉଳ ଆଞ୍ଜୁଳି ଧରି, ମୁହଁ ଭୁରୁଙ୍ଗା କରି ରସକୁଣ୍ଡକୁ ଗାଧୋଇ ଆସିବା ମାତ୍ରେ ବ୍ୟାଣ୍ଡ ବାଜି ଉଠିଲା । ମାମୁଙ୍କ ଠାରୁ ସେ ବ୍ୟାଣ୍ଡବାଲା ମୋତେ ବେଶୀ ସୁନ୍ଦର ଦିଶୁଥାନ୍ତି ।

ମାମୁଙ୍କର ବର ଅନୁକୂଳ ହେଲା । ଭାଇ ମାରକୁଣ୍ଡୀ ହେଲେ । ସମସ୍ତେ କହୁଥାନ୍ତି ବର ସାଙ୍ଗକୁ ମାରକୁଣ୍ଡୀ ମାନିଛି । କୁନାଭାଇଙ୍କ ନେତୃତ୍ୱରେ ଆମେ ବୋଲିଲୁ– 'ବର ଖାଏ ବରା, କନିଆ ଖାଏ ଛୁଞ୍ଚିପତର, ମାରକୁଣ୍ଡୀ ଖାଏ ଛେରା ।' ବର ଅନୁକୂଳ କାମରେ ବ୍ୟସ୍ତ ଥାଇ ଆମ ଗୀତ ପ୍ରତି କେହି ମନଯୋଗ ଦେଲେ ନାହିଁ ।

ମାରକୁଣ୍ଡୀଙ୍କୁ ବନାରସୀ ଯୋଡ଼ ପିନ୍ଧାଇଲା ବେଳକୁ ଭାଇ ପାଟ ପିନ୍ଧିବାକୁ ମନା କରି ଦେଲେ । ଗୋଟାଏ ଖଦଡ଼ ଲୁଗା ଓ ଫତେଇ ପିନ୍ଧି ସେ ସୁନା ଜରିଲଗା ବନାରସୀ ପାଟ ପିନ୍ଧା ବର ପାଖରେ ପାଲିଙ୍କିରେ ବସିଲେ । ତଥାପି ଭାଇଙ୍କ ରୂପକୁ ସମସ୍ତେ ବାହୁନୁଥାନ୍ତି ।

ମାଇଁ ଆସିଲେ । ସତ୍ୟଭାମାପୁର ଗାଁର ଝିଅ, ବୋହୂ, ବୁଢ଼ୀ ସମସ୍ତେ ବୋହୂ ଦେଖିବାକୁ ଆସି ରୁଣ୍ଡ ହେଲେ । ଅଭିମତ ଦେଲେ– ଗୋଟିଏ ଚାଉଳରେ ଗଢ଼ା । ମାଇଁଙ୍କ ବୋହୂପଣିଆକୁ ସମସ୍ତେ ଧନ୍ୟ ଧନ୍ୟ କଲେ । ସେ ପାହାନ୍ତାରୁ ଉଠି ତାଙ୍କ ଧାଇ ସାଙ୍ଗେ କନକଦଣ୍ଡାକୁ ଯାଇ ଗାଧୁଅନ୍ତି । ଆଗ ଠାକୁର ଘର ଧୋଇ ତା'ପରେ ଗୁରୁଜନମାନଙ୍କ ଗୋଡ଼ ଘଷି ଦିଅନ୍ତି । ଠାକୁରଙ୍କ ପାଇଁ ପୁରୀ ବଡ଼ ଦେଉଳ ରୀତିରେ ନାନା ପ୍ରକାର ଫୁଲ ଗୁନ୍ଥନ୍ତି । ସମସ୍ତଙ୍କ ପାଇଁ ପ୍ରତ୍ୟେକଙ୍କର

ରୁଚି ଅନୁସାରେ ପାନ ଭାଙ୍ଗନ୍ତି । ବଡ଼ମା' ଗାଧୋଇ ଆସିଲେ ତାଙ୍କ ଗୋଡ଼ ଧୋଇ ପୋଛି ଦିଅନ୍ତି । ଏସବୁ ହେଉଛି ବୋହୂ ପଣିଆ । ଏହାଛଡ଼ା ସମସ୍ତଙ୍କ ପାଇଁ ଚନ୍ଦନକମ କରିଦେବା ମୁରୁଜ ପକେଇବା, ମୁଣ୍ଡ କୁଣ୍ଡେଇଦେବା ମଧ୍ୟ ଅନିବାର୍ଯ୍ୟ କାର୍ଯ୍ୟକ୍ରମ । ମୋତେ ମଧ୍ୟ ବେଶପଟା କରିଦିଅନ୍ତି । କିନ୍ତୁ ଏ ବେଶପଟା ଠାରୁ ହାତୀ ଚଢ଼ି ବୁଲିବା ମୋ ପାଇଁ ଅଧିକ ଚିତ୍ତାକର୍ଷକ ଥିଲା ।

ମାମୁଙ୍କ ଦ୍ୱାରା ରଚିତ ନାଟକର ପୁଣି ଥିଏଟର୍ ହେଲା । ରିହର୍ସଲ ହେଲାବେଳେ ଚିନ୍ତା ଆମକୁ ସେଠାକୁ ନେଇ ଯାଉଥିଲା । ରାଧାଙ୍କ ଶାଶୁ ଭୂମିକାରେ ଆମ ନାଲୁ ପୂଜାରୀ ଅଭିନୟ କରୁଥିବାର ମନେ ପଡୁଛି । ଘରର ସବୁ ପାଟ ପୀତାମ୍ବରୀ ନାଲୁ ପୂଜାରୀ ଓ ଅନ୍ୟ ଅଭିନେତା ମାନେ ପିନ୍ଧିଲେ । ପୁଅମାନେ ଝିଅ ସାଜି ଅଭିନୟ କଲେ । ମୁଁ ଗୋଟାଏ ଗୀତ ବୋଲି ଶିଖିଥିଲି । 'ବୃଷଭାନୁ ଜେମା ମିଛେ ଜାଣୁ ଜାଣୁ ହେଲୁ ବାଇ କିଲୋ ମାଆ ।' ଚିନ୍ତା ଖଞ୍ଜଣି ବଜାଏ । ମୁଁ ରୁମାଲ ଧରି ନାଚେ । କୁନାଭାଇ, ଟୁଆଁ ଓଗେର ଦର୍ଶକ ।

ଏହିରୂପେ ମାମୁଙ୍କ ବିବାହ ପର୍ବ ସରିଲା । ତା'ପରେ ହେତୁ ପାଇଲାରୁ ସତ୍ୟଭାମାପୁରରେ ଅନ୍ୟ ଦୃଶ୍ୟ ଦେଖିଲି, ଯେଉଁଟା ସଚରାଚର ଦେଖିବାକୁ ମିଳେନାହିଁ । ସକାଳେ ବଡ଼ମା' ଗାଧୋଇ ଆସି ସିଧା ସଳଖ ଠାକୁର ଘରକୁ ସ୍ତୋତ୍ର ବୋଲି ବୋଲି ଯିବେ । ଠାକୁର ଘରୁ ସେ ବାହାରିଲା ବେଳକୁ ନିଲାମ ଘର ବାରଣ୍ଡାରେ ହାଣ୍ଡିଏ ଲିମ୍ବପତ୍ର ସିଝା ପାଣି, କଣ୍ଡୁ ଦାବାନଳ ମଲମ ଓ ଗୋଲ ଗୋଲ ହୋଇ କଟା ହୋଇଥିବା କନା ଓ ପାଚନ ପାଣି ସିଝା ହୋଇ ରହିଥିବ । ଗାଁର ପଂଝାଏ ପିଲା ଆସି ବସିଥିବେ- ଯାହାଙ୍କ ଦେହରେ କାଛୁ ହୋଇଥିବ । ବଡ଼ମା ସେମାନଙ୍କ କାଛୁ ଲିମ୍ବପତ୍ର ସିଝା ପାଣିରେ ଧୋଇ, କଣ୍ଡୁଦାବାନଳ ଲଗାଇ, କାଛୁ ଉପରେ ଗୋଲ କନାପଟି ପକେଇ ଦେବେ । ଅନ୍ୟମାନଙ୍କୁ ପାଚନ ପିଇବାକୁ ଦେବେ । ତା' ପରେ ତାଙ୍କ ହାତରେ ଠାକୁର ଭୋଗ ଦେଇ ବିଦା କରିଦେବେ ।

ମଧ୍ୟାହ୍ନ ଭୋଜନ ତାଟିଆ ଗିନା ଧରି, ସରୁ ଓଢ଼ଣା ପକେଇ ଝିଅ ବୋହୂମାନେ ଆସିବେ । ସେମାନଙ୍କ ରୋଗ ଓ ରୁଚି ଅନୁସାରେ ପଥ୍ୟ ରାନ୍ଧି ଯୋଗାଇବାଟା ବଡ଼ମା'ଙ୍କର ଥିଲା ମୁଖ୍ୟ ମନୋରଂଜନାତ୍ମକ କାର୍ଯ୍ୟକ୍ରମ । ଏହିପରି ଭାବରେ ସେବା ମାଧ୍ୟମରେ ଲୋକଙ୍କ ହୃଦୟକୁ ଛୁଇଁବା କଳାଟା ମୋ' ବୋଉ ବୋଧହୁଏ ବଡ଼ମା'ଙ୍କ ଠାରୁ ଉତ୍ତରାଧିକାର ସୂତ୍ରରେ ହାସଲ କରିଥିଲା ।

ବୋଉ ନିଖିଳ ଭାରତୀୟ ସମ୍ମିଳନୀ ଗୁଡ଼ିକର ବ୍ୟବସ୍ଥା କାର୍ଯ୍ୟ ଯେ ସୂଚାରୁ ଭାବରେ ସଂପନ୍ନ କରି ନିଖିଳ ଭାରତୀୟ କ୍ଷେତ୍ରରେ ପ୍ରଶଂସିତ ହୁଏ, ସେଇଟା ମଧ୍ୟ ସେ ତା', ବିଭାଘର ବେଳର ବ୍ୟବସ୍ଥା ଦେଖି ଶିଖିଛି ବୋଲି ବାପା ବହୁବାର କହିଛନ୍ତି । ନିର୍ବନ୍ଧ ବେଳେ କନ୍ୟାପକ୍ଷ ପଚାଶ ସାଆନ୍ତ ମର୍ଯ୍ୟାଦା ଦେବେ ବୋଲି ଜବାବ ଛିଣ୍ଡିଲା । ପଚାଶଜଣ ସାଆନ୍ତ+ପଚାଶଜଣ ବାରିକ ବା ପାଖଲୋକ+ଗୋଟିଏ ସବାରିର ୮ଜଣ ବାହକ । ଜଣେ ସାଆନ୍ତଙ୍କ ପାଇଁ ଶହେ ଆଠ ଜଣ ସେବକ । ତେଣୁ ପଚାଶ ସାଆନ୍ତ x ୮ = ୪୦୦ଜଣ ଆସିବେ କେବଳ ସବାରୀ ବାହକ । ସତ୍ୟଭାମାପୁରରେ ପ୍ରତ୍ୟେକ ଦଳର ବେହେରାଙ୍କ ପାଇଁ ଅଲଗା ଅଲଗା ସିଧା ଓ

ତାଟିଘର ଖଞ୍ଜା ହୋଇଗଲା । ମାଛ ଓ ଆରିଶା ପିଠା ଯେଉଁ ଦଳ ଯେତେ ଚାହିଁବେ ସେତେ ଦିଆଯିବ ବୋଲି କଡ଼ା ହୁକୁମ ଦିଆ ଯାଇଥିଲା । ତାହା ସାଙ୍ଗକୁ ସ୍ୱାମୀ ବିଚିତ୍ରାନନ୍ଦ ଦାସ, ବୀରକିଶୋର ରାୟଙ୍କ ପରି ଟୋକାଟାକଳିଆ ବରର ସାଙ୍ଗ ବରଯାତ୍ରୀ। ସାଆନ୍ତମାନଙ୍କ ଚର୍ଚ୍ଚା ସ୍ୱତନ୍ତ୍ର । ଘିଅ ପରଷା ହେଲା ବେଳେ ଘିଅ ହାତରୁ ରେଜି ପତ୍ର ଉପର ଦେଇ ତଳକୁ ବୋହି ଯାଉଥିବ, ସାଆନ୍ତେ ହାତ ଟେକି ନିଷେଧ କରିବେ ନାହିଁ । ଫଳରେ ଜିରାରୁ ସିରା କାଢ଼ିବାରେ ପ୍ରବୀଣ ସାଆନ୍ତମାନେ ଖ୍ରୀଷ୍ଟୀୟାନ୍ ଘର ଅବିଧି ଦର୍ଶାଇ ନାକ ଟେକି ପାରିଲେ ନାହିଁ । ଏହି ବ୍ୟବସ୍ଥାପନାର ବିନିଯୋଗ ବୋଉ ତାର ସର୍ବକାଳୀନ ସେବା କ୍ଷେତ୍ରରେ କଲା । ସହିଷ୍ଣୁତା, ସ୍ନେହପ୍ରବଣତା, ଯୋଗ୍ୟ ଅଯୋଗ୍ୟ ନିର୍ବିଶେଷରେ ସମସ୍ତଙ୍କ ପ୍ରତି ଆଦରଭାବ ମଧ୍ୟ ସେ ବଡ଼ମା'ଙ୍କ ଠାରୁ ଉତ୍ତରାଧିକାର ସୂତ୍ରରେ ପାଇଥିଲା । ମୋ' ମାଉସୀ ମଧ୍ୟ ତାଙ୍କର ବ୍ୟବସ୍ଥା-ଶକ୍ତି ଓ ଘରକରଣା ଯୋଗୁ ଖ୍ୟାତି ଅର୍ଜିଥିଲେ । କିନ୍ତୁ କେତେଦିନ ସେ ରହିଲେ ! ପଞ୍ଚମ ସନ୍ତାନ ଜନ୍ମଗ୍ରହଣ କଲା । ରକ୍ତହୀନତା ଦୋଷରୁ ସେ ଅକାଳରେ ଚାଲିଗଲେ ।

ସତ୍ୟଭାମାପୁର ମାମୁଘର ଫଳବଗିଚାକୁ ପୁରୀର ଜଗନ୍ନାଥ ବଲ୍ଲଭ ସହିତ କେହି କେହି ତୁଳନା କରୁଥିଲେ । ବଡ଼ମା'ଙ୍କର ଫଳବଗିଚା କରିବା ସଉକ ଥିଲା । ଆମ୍ବ, ଲିଚୁ ଆଦିର କଲମି ଗଛ ସେ ମୋଜାଫରପୁରରୁ ଆଣି ନିଜ ହାତରେ ଲଗାଇଥିଲେ । ମାଛ ଯେମିତି ସବୁବେଳେ ମିଳିବ, ଜାଲ ପକାଇବାକୁ ପଡ଼ିବ ନାହିଁ– ସେଥିପାଇଁ କନକଦଣ୍ଡାରେ ଗୋଟାଏ ବଡ଼ ଜାଲ ଭିତରେ ମାଛ ରହିଥାନ୍ତି । ବାଙ୍କାବଜାରରେ ମାମୁଘର ପରି ହଂସ, କୁକୁଡା ଆଦି ନଥିଲେ । ଗାଈ ପଲେ ଥିଲେ । ଧାନ ଜମି ସଞ୍ଜା ଦିଆ ହୋଇଥିଲା । ବଡ଼ମା' ନିଜେ ଏସବୁ ଦେଖା ଶୁଣା କରୁଥିଲେ ।

କ୍ରମେ ମାମୁ ଏସବୁ କାମ ତୁଲାଇଲେ । ମାଇଁ ଘରକରଣା ତୁଲାଇଲେ । ବନ୍ଧୁବାନ୍ଧବ ଖୋଜା ଲୋଡ଼ା, ଭାରବେଭାର ଦେବା ଆଦି କାମ ଏପରି ଭାବରେ ତୁଲାଇଲେ ଯେ ଲୋକେ ତାକୁ ପ୍ରଶଂସା କଲେ ।

ମାଇଁଙ୍କର ଦୁଇ ପୁଅ ବାହୁଡ଼ି ଯିବା ପରେ ଝିଅ ହେଲା । ବଡ଼ମା' ତାକୁ ଗେଲ କଲାବେଳେ ବୋଲନ୍ତି–

'ଧେଇକି ନାଟ ଧେଇୟା ନାଟ
ସମସ୍ତେ ପିନ୍ଧିବେ କନା କବଟା, ମାଣିକ ପିନ୍ଧିବ ଦକ୍ଷିଣୀ ପାଟ ।'

ଏଇଥିରୁ ମାଣିକ ନାଆଁଟା ବଜାୟ ରହିଗଲା । ମାଣିକ ଜନ୍ମ ହେବା ପରେ ମଧ୍ୟ ମାମୁ ମାଇଁ ସତ୍ୟଭାମାପୁରରେ ଥିଲେ । ୧୯୩୪ ମସିହା ମେ ମାସ ତେଇଶ ତାରିଖରେ ଗାନ୍ଧିଜୀ ସତ୍ୟଭାମାପୁର ମାମୁଘରେ ଗୋଟିଏ ରାତି ରହିଲେ । ତାଙ୍କ ସାଙ୍ଗରେ ଦେଶୀ, ବିଦେଶୀ ପଦଯାତ୍ରୀ ବହୁ ସଂଖ୍ୟାରେ ଥାଆନ୍ତି । ଏପରିକି ଅତିଥିମାନଙ୍କ ପାଇଖାନା ସୁଦ୍ଧା ମାମୁ ନିଜେ ସଫା କରୁଥାନ୍ତି ।

ସତ୍ୟଭାମାପୁରକୁ ସେହିଦିନ ଖବର ଆସିଲା ଯେ ବଡ଼ମା'ଙ୍କୁ ବସନ୍ତ ହୋଇଛି । ଗାନ୍ଧୀଜୀଙ୍କ କେନ୍ଦ୍ରାପଡ଼ା ରହଣୀକୁ ଖବର ଆସିଲା– ବଡ଼ମା' ଚାଲିଗଲେ ।

ପ୍ରବଳ ଝୋଟ ଚାଷ ଯୋଗୁ କି କାହିଁକି ଓଡ଼ିଶାରେ ମ୍ୟାଲେରିଆ ପ୍ରବଳ ହେଲା । ମାମୁଙ୍କୁ ମଧ୍ୟ ମ୍ୟାଲେରିଆ ହେଲା । ବିଧିବଦ୍ଧ ଚିକିତ୍ସା ସତ୍ତ୍ୱେ ମ୍ୟାଲେରିଆ ଛାଡିଲା ନାହିଁ । ମାମୁ ମାଇଁ ସତ୍ୟଭାମାପୁରକୁ ଛାଡ଼ିଲେ ।

ଆମେ ମଧ୍ୟ କଟକ ଛାଡ଼ିଲୁ ୧୯୩୪ ମସିହା ଅଗଷ୍ଟ ମାସରେ । ଗାନ୍ଧୀଜୀ ୧୯୩୪ରେ ଓଡ଼ିଶାରେ ପଦଯାତ୍ରା କଲାବେଳେ ବୋଉ ଓ ତା' ସାଙ୍ଗରେ ରହି ହରିଜନ ବସ୍ତିରେ କାମ କରୁଥିବା ରାଜେଶ ଝିଅ ମଧ୍ୟ ପଦଯାତ୍ରାରେ ଥିଲେ । ଗାନ୍ଧୀଜୀ ୮ ଜୁନ୍ ୧୯୩୪ରେ ଓଡ଼ିଶାରୁ ବିଦା ହେଲେ । ସେ 'ଅମୃତ ବଜାର ପତ୍ରିକା'ର ପ୍ରତିନିଧିଙ୍କୁ ଯେଉଁ ବିବୃତି ଦେଲେ ସେଥିରେ କହିଲେ– "Our party included girls from Rama Devi's Ashram. I marvelled at their capacity for walking bare-footed. Early morning as soon as we reached our destination, these girls went out to Harijan quarters and brought the reports of what they have seen or done. They never knew what fatigue was and though many of them had been brought up in the lap of luxury they put up with all the trials of a member which by no means was soft job. I have had the privilege of mixing with tens of thousands of Indian women. I have seen them at work but nowhere have I seen any thing quite like what Smt. Rama Devi and her little band have been found to do as gracefully and so naturally. They never needed and claimed any special privilege."

ଏ ପ୍ରକାର ମନ୍ତବ୍ୟ ଦେଇ ଗାନ୍ଧୀଜୀ ବୋଉକୁ କହିଲେ– "ତୁମେ ଝିଅମାନଙ୍କୁ ପାଖରେ ରଖି ସଣ୍ଢଣା ଶିଖାଅ ।" ବାପା ବୋଉ ବରୀକୁ ଯିବାପରେ କେତେଗୁଡ଼ିଏ ଝିଅ ଆସି ବୋଉ ସାଙ୍ଗରେ ରହିଲେ । ବୋଉର ତ ନୀତି ହେଲା– କୌଣସି କାମ ଆରମ୍ଭ କରିବାକୁ ହେଲେ ନିଜ ଠାରୁ ବା ନିଜଘରୁ ଆରମ୍ଭ କରିବା ଉଚିତ । ତେଣୁ ସେ ମାମୁଘର ଆଡ଼କୁ ଚାହିଁଲା । ବଡ଼ମାଙ୍କର ତ ବସନ୍ତ ରୋଗରେ (ଗାନ୍ଧିଜୀଙ୍କ ପଦଯାତ୍ରା ଚାଲିଥିଲା ବେଳେ) କାଳ ହୋଇଥିଲା । ତାର ପ୍ରିୟ ଭାଇମାନଙ୍କ ମଧ୍ୟରୁ ଦେବମାମୁଙ୍କର ମଧ୍ୟ ମୃତ୍ୟୁ ହୋଇ ସାରିଥିଲା । ବୋଉ କହିବାରୁ ବେଙ୍ଗମାମୁ ଦେବମାମୁଙ୍କ ଝିଅ ମିନିକୁ ବୋଉ ପାଖକୁ ପଠାଇ ଦେଲେ । ମିନି ଅନ୍ୟ ଝିଅମାନଙ୍କ ସଙ୍ଗେ ମିଶି ଗୋଟା ଚାଉଳ ଭାତ ଖାଇଲା । ବଗିଚାରେ ପାଣି ଦେଲା, ବାଛୁରୀକୁ ଗାଧୋଇ ଦେଲା । ପାହାନ୍ତା ପହରରୁ ଉଠି ପ୍ରାର୍ଥନା ପରେ ଏସ୍‌ରାଜ୍‌ରେ ରେୟାଜ୍ କଲା । ସୂତା କାଟିଲା । ମାତ୍ର ସଣ୍ଢଣା ଶିଖିଲା କି ନାହିଁ ସେ କଥା ସିନା ତା' ଶାଶୁଘର ଲୋକେ କହିବେ । ମାମୁ ମାଇଁ ବରୀ ସାଙ୍ଗରେ

ସମର୍ଥ ରହୁଥିଲେ ଏବଂ ସେ ଡିଆଘର ବେଳେ ମାର୍ଚ୍ଚ ଓ ମାଣିକ ପାଟ ପାରି ହୋଇ ବଡାକୁ ଯାଉଥିଲେ ।

୧୯୪୨ରେ ଆମେ ଜେଲରେ ରହିଲୁ । ସେଇଠି ଖବର ପାଇଲୁ ମାଇଁଙ୍କର ଗୋଟିଏ ଷାଣ୍ମାସିଆ ପୁଅ ହେଲା । ବହୁ ଯତ୍ନ ସତ୍ତ୍ୱେ ସେ ବାହୁଡ଼ି ଗଲା । କାରାମୁକ୍ତ ହେବା ପରେ ମଧ୍ୟେ ମଧ୍ୟେ ବାଙ୍କାବଜାର, ମାଡାମଠ, ତୁଳସୀପୁର ଯାଏ । ମାମୁଘର ଖେଳେଇ ହେଇ ଯାଇଛି । ଧୀରେ ଧୀରେ ପଟପରିବର୍ତ୍ତନ ଆରମ୍ଭ ହେଲା । ମାମୁଙ୍କର ଭାଇମାନଙ୍କ ମଧ୍ୟରୁ ଆଗ ଗଲାଣି । ମୁଁ ସେଦିନ ବେଙ୍ଗ ମାମୁ ଓ ନୂଆମାଇଁଙ୍କ ପାଖରେ ଥିଲି । ସନ୍ଧ୍ୟା ହେଲା । ବୁଢ଼ୀ ଆସି କହିଲା– ଶ୍ମଶାନରୁ ଆସି ସମସ୍ତେ ସେମିତି ରହିଛନ୍ତି । ବାବୁ ଆଗ ପାଟିରେ କିଛି ଦେଲେ ସିନା ଅନ୍ୟମାନେ ଖାଇବସିବେ । ମୁଁ ମାମୁଙ୍କୁ କହିଲି– ଟିକିଏ ସରବତ୍ ପିଅନ୍ତୁ । ମାମୁ କହିଲେ– ମାଆ । ମୁଁ ନିର୍ଲଜଙ୍କ ପରି ଚା' ପୁଣି ମାଗିକରି ପିଇବି । ଚା'ରେ ଚିନି କମ୍ ହୋଇଥିଲେ ଚିନି ମାଗିବି । ଆଜି ମୋତେ ଛାଡିଦେ । ଗିଲାସେ ପାଣି ଆଣି ଦେଲି । ସେ ଦି'ଢ଼ୋକ ପିଇଲାରୁ ସମସ୍ତେ ଜଳଗ୍ରହଣ କଲେ । ସେଦିନ ବୁଝିଲି, ବଡ଼ମା' କାହିଁକି 'ଆଜି ତ ଅସାର ଲାଗେ ଏ ସଂସାର' ବୋଲିବା ପାଇଁ ମାମୁ ମାଇଁଙ୍କୁ କହନ୍ତି । ଚିଙ୍ଗୁଡ଼ି, ନଟ, ଉନା, ବିଜି, ଭୁଲିଆ, ଗୁନି ଚାଲି ଗଲେଣି । ଗୁନି ଯିବା ପୂର୍ବଦିନ ବେବୁ ଘରେ ତାକୁ ଦେଖି ଆସିଥିଲି । ଯେଉଁମାନଙ୍କୁ କାଖରେ ଧରିଥିଲି, ସେମାନେ ଚାଲିଗଲେ । ଦିନେ ଅକାରଣରେ ଅଜି, ଡଲି, ଇନ୍ଦୁକୁ ଦେଖି ଆସିଲି । ଦିନେ ଶୋଭା, ମେବୁଲ, ଅନୁ ଓ ଜଇଁକୁ ଦେଖି ଆସିଲି । ମିନି, ମାଣିକ, ଟୁନୀକୁ ଦେଖି ଆସିଲି । କାଳେ ଆଉ ଦେଖି ପାରିବି ନାହିଁ ସେଥିପାଇଁ ଦେଖିବାକୁ ଆସିଲି ବୋଲି ମଧ କହିଲି ନାହିଁ । କେବଳ ମାଳ ଖୁଡୀଙ୍କୁ କହିଥିଲି– ଖୁଡ଼ୀ, ବୁଢ଼ୀ, ଝିଆରୀ, ବୁଢ଼ୀ, କିଏ କୋଉଦିନ ଯିବ ଜଣାନାହିଁ । ସେଥିପାଇଁ ତମକୁ ଦେଖିବାକୁ ଆସିଲି । ପିଲା ପରିବାରରେ ମଧ ସେହି ବିୟୋଗ ଦୁଃଖ । ଏ ସୁନ୍ଦର ପୃଥିବୀ, ଏ ସ୍ନେହ ଶରଧା ଏସବୁ ମିଥ୍ୟା ବୋଲି କୁହାଯାଇଛି । ଏଥିରୁ ମୁକ୍ତ ହେବି ନା ଏ ସ୍ନେହ ଶରଧାକୁ ଆହୁରି ପ୍ରସାରିତ, ଆହୁରି ବ୍ୟାପକ କରିବି ? ବିୟୋଗ ଦୁଃଖର ବେଦନା ସହି ସୁଦ୍ଧା ଏ ସ୍ନେହ ଶରଧାକୁ ହିଁ ଗଣ୍ଠିଧନ କରିବି ?

ଦଦଦ